# ଜଗତୀ କରଣ ଅର୍ଥନୀତିରେ ନିଯୁକ୍ତି

ଲେଖକ:
ଶ୍ରୀ ସୌରୀବଂଧୁ କର

# ଜଗତୀ କରଣ ଅର୍ଥନୀତିରେ ନିଯୁକ୍ତି

ଗତ କିଛି ବର୍ଷଧରି ଏହା ନିଃସନ୍ଦେହରେ କୁହାଯାଇପାରେ ଯେ ଭାରତରେ ନିଯୁକ୍ତି କମିବାରେ ଲାଗିଛି । ବିଶେଷ ଭାବରେ ଏହା ୧୯୯୧ ମସିହାଠାରୁ ଆରମ୍ଭ କରାଯାଇଥିବା ନୂତନ ଅର୍ଥନୈତିକ ନୀତି ଯୋଗୁ ଘଟୁଛି । ସରକାରୀ ହିସାବରୁ ଜଣାଯାଏ ଯେ ନିଯୁକ୍ତିର ମାପକାଠି ଗତ ୧୦ବର୍ଷ ମଧ୍ୟରେ ଅତିବେଶୀ ଖସି ଯିବାରେ ଲାଗିଛି, ବିଶେଷ କରି କୃଷି କ୍ଷେତ୍ରରେ ଯେଉଁଠାରେ ପ୍ରାୟ ୬୦ ପ୍ରତିଶତ ଶ୍ରମଶକ୍ତି କାମରେ ନିଯୁକ୍ତ । ଅବସ୍ଥା ଅତ୍ୟନ୍ତ ସଙ୍ଗୀନ ଏବଂ ସରକାରୀ ପରିସଂଖ୍ୟାନକୁ ଠିକ୍ ଭାବରେ ଗ୍ରହଣ କରାଯାଇନପାରେ ।

କୌଣସି ଅର୍ଥନୀତିରେ ନିଯୁକ୍ତି ସମସ୍ତ ନୀତିକୁ ଆଧାର କରି ବିଚାର କରାଯାଏ । ନୀତି ନିର୍ଦ୍ଧାରଣର ଦର୍ଶନ ୧୯୯୧ ମସିହାରୁ ଆରମ୍ଭ ହୋଇଛି ଯେତେବେଳେ ରାଷ୍ଟ୍ର ଯଥେଚ୍ଛାଭାବେ ଏକପାଖିଆ ଜଗତୀକରଣକୁ ଆଦରି ନେଲା ଯାହା ଆନ୍ତର୍ଜାତୀୟ ପୁଞ୍ଜିର ଚାପରେ ସମସ୍ତ ସାମାଜିକ ସଂପର୍କର ବଜାରୀ କରଣ ଉପରେ ପର୍ଯ୍ୟବେସିତ । ବର୍ତ୍ତମାନ ସବୁକିଛି ନୀତି ଏହି ନୀତି ଦ୍ୱାରା ନିର୍ଦ୍ଧାରିତ ହେଉଛି । ବଜାର ହେଉଛି ଅଗଣତାନ୍ତ୍ରିକ ଓ ମୂଲ୍ୟବୋଧ ରହିତ ଏବଂ ଏହାର ଫଳହେଉଛି ଯେଉଁମାନେ କଣଠେସା (Marginalisation) ପ୍ରାନ୍ତୀୟ ସେମାନଙ୍କୁ ଆହୁରି କଣଠେସା । ପ୍ରାନ୍ତୀୟ କରିଦିଏ ଯାହାଫଳରେ, ଶ୍ରମ ଦୁର୍ବଳ ହୋଇ ପଡିଛି ଏବଂ ନିଜର ସ୍ୱାର୍ଥକୁ ସୁରକ୍ଷା କରି ପାରୁନି । ଆନ୍ତର୍ଜାତୀୟ ପରିସ୍ଥିତି ଯଥା ଚୀନ୍ ଦେଶରେ ପରିବର୍ତ୍ତନ ଓ ସୋଭିଏତ ୟୁନିୟନର ପତନ ଫଳରେ ଏହି ପ୍ରକ୍ରିୟାକୁ ଅଧିକ ତ୍ୱରାନ୍ୱିତ କରିଛି ।

କଣଠେସା ହୋଇଥିବା ଗୋଷ୍ଠୀମାନଙ୍କ ମଧ୍ୟରେ ନିଯୁକ୍ତି ସମସ୍ୟା ଅତ୍ୟଧିକ ଜଡିତ ଯଥା:- ଅସଂଗଠିତ, ମହିଳା ଏବଂ ଶିଶୁ ଯେଉଁମାନେ ବିଶେଷଭାବେ ରାଷ୍ଟ୍ରର ଗ୍ରାମାଞ୍ଚଳ ଓ ପଛୁଆ ଅଞ୍ଚଳରେ ରହିଛନ୍ତି । ବିକାଶର ଅଧିକ ହାର ଏହି ସମସ୍ୟାକୁ ସମାଧାନ କରିପାରିନି ଯାହା ବର୍ତ୍ତମାନ ଅନୁଭୂତିରୁ ଦେଖାଯାଉଛି ଯେ ଏହା ଅତ୍ୟଧିକ ପୁଞ୍ଜି ସଘନତାରୁ ଘଟିଛି । ବଜାର ତା ମନକୁ ମନ ପର୍ଯ୍ୟାପ୍ତ ନିଯୁକ୍ତି ସୃଷ୍ଟି କରିବ ନାହିଁ ଏବଂ ଯଦିବା ପାଠ୍ୟ ପୁସ୍ତକ ଢଙ୍ଗରେ କାର୍ଯ୍ୟକାରୀ ହୁଏ, ତେବେ ଏହା ବିଳମ୍ବିତ ହେବ

ଏବଂ ଦରିଦ୍ର ମାନଙ୍କୁ ଅତ୍ୟଧିକ ମୂଲ୍ୟ ଦେବାକୁ ହେବ । ସମସ୍ୟା ହେଉଛି ବିକାଶର ମାର୍ଗ, ରାଷ୍ଟ୍ରର ସମ୍ବଳ ଅଭାବରୁ ନୁହେଁ । ଦେଶର ଅପର୍ଯ୍ୟାପ୍ତ ସମ୍ବଳ କଳାଟଙ୍କା ମାଧ୍ୟମରେ ଗଚ୍ଛିତ ହୋଇ ରହିଛି ଏବଂ ଦେଶ ବାହାରକୁ ନିଆଯାଉଛି କିମ୍ବା ନଷ୍ଟ କରାଯାଉଛି ।

ନିଜ ରାଷ୍ଟ୍ରର ବିକାଶର ମାର୍ଗକୁ ଖୋଜିବାକୁ ହେବ ଯେହେତୁ ବର୍ତ୍ତମାନର ପାଶ୍ଚାତ୍ୟ ଢାଞ୍ଚାର ବିକାଶ ମାର୍ଗ ଅତ୍ୟଧିକ ସମସ୍ୟା ସୃଷ୍ଟି କରୁଛି । ନିଯୁକ୍ତି ସୃଷ୍ଟି କରିବା ଉପରେ ଗୁରୁତ୍ୱ ଦେବାକୁ ହେବ । ଯଥେଚ୍ଛା ଭାବରେ ଜଗତୀକରଣ ମୁଷ୍ଟିମେୟ ସମ୍ଭ୍ରାନ୍ତ ଶାସକ ଗୋଷ୍ଠୀ ( ଯାହାର ସଂଖ୍ୟା ସମୁଦାୟ ଲୋକସଂଖ୍ୟାର ୩%)ଯେଉଁମାନଙ୍କ ପାଖରେ ଅପର୍ଯ୍ୟାପ୍ତ ପରିମାଣର କଳା ସଂପତ୍ତି ମହଜୁଦ୍ ଅଛି ଏବଂ ତା ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ହେଉନାହିଁ । ସେମାନଙ୍କର ସ୍ୱାର୍ଥ ପାଇଁ ନହେବା ଉଚିତ

ସଂକ୍ଷେପରେ କହିଲେ ଭାରତର ନିଯୁକ୍ତି ସମସ୍ୟାର ଦୁଇଟି ସମସ୍ୟାକୁ ସମ୍ମୁଖିନ ହେବାକୁ ହେବ । ଗୋଟିଏ ହେଉଛି ଜଗତୀକରଣ ଓ ଅନ୍ୟଟି ହେଉଛି କଳାଅର୍ଥନୀତି । ଏବଂ ଏଥି ପାଇଁ ନୂତନ ବିକାଶର ମାର୍ଗକୁ ଉନ୍ମୋଚନ କରିବାକୁ ହେବ । ଯାହାକି ସ୍ୱଦେଶୀ ସମ୍ବଳ ଏବଂ ଗାନ୍ଧୀଙ୍କର ବିଚାର ଶେଷ ଲୋକଟି ପ୍ରଥମ ଉପରେ ଆଧାରିତ ହେବ । ସମାଜ ଆବଶ୍ୟକ କରେ ବଜାର ଓ ଟେକ୍ନୋଲଜିକୁ ନିଜ ନିୟନ୍ତ୍ରଣକୁ ଆଣିବ ଏବଂ ମଣିଷକୁ ମଣିଷ ପରି ବ୍ୟବହାର କରିବ- ଏକ ସୌଖିନ ଯନ୍ତ୍ରଭାବରେ ନୁହେଁ ।

<u>ଉପକ୍ରମ</u>:- ବର୍ତ୍ତମାନ ଭାରତରେ ଦୀର୍ଘ କିଛିବର୍ଷ ଧରି ନିଯୁକ୍ତି ଓ ଅର୍ଦ୍ଧନିଯୁକ୍ତି କମିବାରେ ଲାଗିଛି । ବିଗତ ୫ ବର୍ଷର ଅର୍ଥନୈତିକ ସର୍ଭେ ରିପୋର୍ଟ ଅନୁସାରେ ସଂଗଠିତ କ୍ଷେତ୍ରରେ ନିଯୁକ୍ତି ହ୍ରାସ ପାଉଛି । ଏହା ମଧ କୁହାଯାଇଛି ଯେ ଅର୍ଥନୀତିର ଏହି କ୍ଷେତ୍ରକୁ ୬୫% ପୁଞ୍ଜି ବିନିଯୋଗ ହୋଇଛି । ୧୯୯୧ ମସିହାରେ ନୂତନ ଆର୍ଥିକ ନୀତି ଲାଗୁ ହେବା ପରଠାରୁ ନିଯୁକ୍ତି ହାନୀ ବଢ଼ିବାରେ ଲାଗିଛି । ବଜେଟ୍ ବିକଳ୍ପରେ କୁହାଯାଇଥିଲା ଯେ ସବୁଠାରୁ ବୃହତ୍ ୨୦ ଗୋଟି ବହୁରାଷ୍ଟ୍ରୀୟ କଂପାନୀ ମାନଙ୍କରେ ୧୯୯୦-୯୧ ରେ ଟେକ୍ନୋଲଜି ଓ ପରିଚାଳନାଗତ

ଢାଞ୍ଚାର ଯାହା ସବୁଠାରୁ ସଫଳ କମ୍ପାନୀମାନେ ପ୍ରୟୋଗ କରୁଛନ୍ତି, ସେଥିରେ ସମୁଦାୟ ୩୦୦ ନିୟୁତ କର୍ମଶକ୍ତି ମଧ୍ୟରୁ କେବଳ କେତେକ ଅଳ୍ପ ସଂଖ୍ୟକ ଭାରତୀୟ ନିଯୁକ୍ତି ପାଇବେ । ପର୍ଯ୍ୟାପ୍ତ ପରିମାଣର ନିଯୁକ୍ତି ପାଇଁ ପୁଞ୍ଜି ବିନିଯୋଗ ବୃଦ୍ଧି କରିବାରେ ସହାୟକ ହେବ ନାହିଁ । ବିଗତ ଦଶନ୍ଧିରେ ନିଯୁକ୍ତି ଅତି ତୀକ୍ଷ୍ଣ ଭାବରେ କମିବାରେ ଲାଗିଛି ଯାହା ଫଳରେ ନିଯୁକ୍ତିହୀନ ବିକାଶ ଘଟୁଛି । ଏପରିକା ଅନୁଭୂତି ଗତ ୮୦ ଦଶକରୁ ପଶ୍ଚିମ ଇଉରୋପରେ ହୋଇଥିଲା । ଏପରିକି ଚୀନ୍‌ରେ ବିଗତ ୨୦ବର୍ଷରେ ୯ ପ୍ରତିଶତ ବିକାଶ ହୋଇଥିଲେ ମଧ୍ୟ, ବେକାରୀ ଏକ ମୁଖ୍ୟ ସମସ୍ୟା ଭାବରେ ଦେଖାଦେଇଛି । କମ୍ୟୁନିଷ୍ଟ ଚୀନ୍‌ରେ ଘଟୁଥିବା ସାମାଜିକ ଉତ୍ତେଜନା ସେଠାରେ ଛପି ଯାଉଥିଲେ ହେଁ ଭାରତ ପରି ଗଣତାନ୍ତ୍ରିକ ରାଷ୍ଟ୍ରରେ ଏହା ହେବା ସମ୍ଭବ ନୁହେଁ ।

ପରିସଂଖ୍ୟାନ ଅନୁସାରେ କୃଷିକ୍ଷେତ୍ରର ଅବସ୍ଥା ଅତ୍ୟନ୍ତ ଅସମ୍ଭାଳ ଯେଉଁଠାରେ ଦେଶର ଆନୁମାନିକ ୬୦ପ୍ରତିଶତ କର୍ମଶକ୍ତି କାର୍ଯ୍ୟରତ । ଗତ ୭ବର୍ଷ ମଧ୍ୟରେ, ଆନୁପାତିକ ଭାବରେ, ଖୁବ୍ ଅଳ୍ପ ସଂଖ୍ୟକ ନିଯୁକ୍ତି ସୃଷ୍ଟି ହୋଇଛି । ୧୯୮୩ରୁ ୧୯୯୩-୯୪ ପର୍ଯ୍ୟନ୍ତ କୃଷିକ୍ଷେତ୍ରର ନିଯୁକ୍ତି ୧.୩୯% ଥିବାବେଳେ ୧୯୯୩-୯୪ରୁ ୧୯୯୯-୨୦୦୦ ମଧ୍ୟରେ ଏହା ୦.୦୫% ପ୍ରତିଶତ ହୋଇଛି । କୃଷିବ୍ୟତୀତ ଅଣକୃଷିକ୍ଷେତ୍ରରେ ନିଯୁକ୍ତି ଯାହା କୃଷକ ପରିବାରର ଯୁବକମାନଙ୍କୁ ନିଯୁକ୍ତି ଦେଇ ପାରିଥାନ୍ତା, ସେଥିରେ ମଧ୍ୟ ଅଭିବୃଦ୍ଧି ଘଟିନାହିଁ । ତେଣୁ ଗ୍ରାମାଞ୍ଚଳରେ ନିଯୁକ୍ତି ସମସ୍ୟା ଉତ୍କଟ ହୋଇଛି । ଏହା ସାମାଜିକ ଓ ରାଜନୈତିକ ସମସ୍ୟା ସୃଷ୍ଟି କରୁଛି ।

ଆମେ ଯେତେବେଳେ ନିଯୁକ୍ତି ସଂପର୍କରେ ଆଲୋଚନା କରୁଛେ, ସେତେବେଳେ ବେକାରୀ ଓ ଅର୍ଦ୍ଧବେକାରୀ ସଂପର୍କରେ ଆଲୋଚନା କରିବା ଆବଶ୍ୟକ । ନୂତନ ଆର୍ଥିକ ନୀତିର ବିଭିନ୍ନ ଦିଗ ଏହାକୁ ଏପରି ପ୍ରଭାବିତ କରୁଛି ଯେ ତାହା ର ସଠିକ୍ ଆଲୋଚନା କରିବା କଷ୍ଟସାଧ୍ୟ ବ୍ୟାପାର । ୧୯୯୧ ମସିହାରେ ନୂତନ ଆର୍ଥିକ ନୀତି ଲାଗୁ ହେବା ଦିନଠାରୁ, ଦେଶର ଅର୍ଥନୀତି ଉପରେ ବିଶ୍ୱର ପ୍ରଭାବ ମଜଭୁତ ହେବାରେ ଲାଗିଛି । ଏବଂ

ଆର୍ଥିକ ଅବସ୍ଥାରେ ଜଟିଳତା ବୃଦ୍ଧି ପାଉଛି, ନିଯୁକ୍ତି କ୍ଷେତ୍ରରେ କ'ଣ ଘଟୁଛି ସେ ସଂପର୍କରେ ଯେଉଁମାନେ ପର୍ଯ୍ୟାଲୋଚନା କରୁଛନ୍ତି, ସେମାନେ ଯେପରି ଏହାକୁ ଆକଳନ କରି ପାରୁନାହାଁନ୍ତି । ସାଧାରଣ ଲୋକତ ସମ୍ପୂର୍ଣ୍ଣ ଭୂଆଁ ବୁଲୁଛନ୍ତି । ସବୁଠାରୁ ଆଶ୍ଚର୍ଯ୍ୟର କଥାଯେ ଆର୍ଥିକ ବିକାଶରେ ପ୍ଲବତା ବଢୁଥିବାବେଳେ ସାଧାରଣ ମଣିଷ ଜୀବନର ସମସ୍ୟା ବଢିଚାଲିଛି । ଏହାର ଜ୍ୱଳନ୍ତ ଉଦାହରଣ ଦେଶରେ କୃଷକମାନେ ଆତ୍ମହତ୍ୟା କରୁଛନ୍ତି । ଏହାର ଅନ୍ୟଏକ ଉଦାହରଣ ମଧ୍ୟ ଏନ୍.ଡି.ଏ. ସରକାରର ୨୦୦୪ ନିର୍ବାଚନବେଳେ ଭାରତ ଉଦୟର ପ୍ରଚାର ସତ୍ତ୍ୱେ ନିର୍ବାଚନରେ ଶୋଚନୀୟ ପରାସ୍ତ । ୮ପ୍ରତିଶତ ବିକାଶ ସତ୍ତ୍ୱେ କ୍ଷମତାସୀନ ଦଳ ସରକାରକୁ ଆସିପାରିଲା ନାହିଁ ।

ଯୁକ୍ତିହେଉଛି ଯେ ଅଧିକ ନିଯୁକ୍ତି ସୃଷ୍ଟି କରିବାର ସମସ୍ୟା ବିଭିନ୍ନ କ୍ଷେତ୍ରରେ ପୁଞ୍ଜିବିନିଯୋଗର ଅଭାବ ର କାରଣ ହେଉଛି କୃଷିକ୍ଷେତ୍ର ଓ କ୍ଷୁଦ୍ର ଉଦ୍ୟୋଗ ଉପରୁ ଗୁରୁତ୍ୱ ହ୍ରାସ ସହିତ ପୁଞ୍ଜି ଓ ଶ୍ରମର ଅନୁପାତ ବୃଦ୍ଧି ସହିତ ଯୋଡା ଯାଉଛି । ଆଇଟିକ୍ଷେତ୍ରରେ ଦ୍ରୁତ ଅଭିବୃଦ୍ଧି ନିଯୁକ୍ତି ହ୍ରାସ ସଂଗଠିତ କ୍ଷେତ୍ରରେ ଘଟାଇ ନାହିଁ ବୋଲି କୁହାଯାଉଛି ଯଦି ଓ କ୍ରମବର୍ଦ୍ଧିଷ୍ଣୁ ଯାନ୍ତ୍ରିକକରଣ ଫଳରେ କର୍ମକ୍ଷୟ ହେଉଛି । ବହୁ ସମୟରେ ଯୁକ୍ତି କରାଯାଉଛି ଯେ ସ୍ୱଦେଶୀ ସମ୍ବଳର ଅଭାବ ରହୁଛି ଏବଂ ବିଦେଶୀ ପୁଞ୍ଜିର ଆବଶ୍ୟକତା ରହିଛି । ବିଦେଶୀ ପୁଞ୍ଜି ଅତ୍ୟଧିକ ପୁଞ୍ଜିସର୍ବସ୍ୱ ।

ତୃତୀୟ ଯୁକ୍ତି ହେଲା ବିଶ୍ୱ ସହିତ ପ୍ରତିଯୋଗିତାରେ ସମ୍ମୁଖୀନ ହେବାପାଇଁ ରାଷ୍ଟ୍ରକୁ ଅତ୍ୟାଧୁନିକ ଟେକ୍ନୋଲଜିକୁ ଗ୍ରହଣ କଲେ କିଛି ନିଯୁକ୍ତି ସୃଷ୍ଟି ହୋଇପାରିବ । ଏହି ସବୁ ଯୁକ୍ତିରୁ ଜଣାଯାଏ ଯେ ଅନ୍ୟ କିଛି ଲକ୍ଷ୍ୟକୁ ପ୍ରାଥମିକତା ଦିଆଯାଉଥିବା ବେଳେ ନିଯୁକ୍ତିକୁ ଅବଶିଷ୍ଟ ବିଷୟଭାବେ ବିଚାର କରାଯାଉଛି ।

ଯେତେବେଳେ ଗୋଟିଏ ସମସ୍ୟା ନିଶ୍ଚିତ ଏବଂ ନିଯୁକ୍ତି ପରି ମୌଳିକ ଯାହା ଲୋକମାନଙ୍କର ଜୀବନ ସହିତ, ଆତ୍ମ ସମ୍ମାନ ସହିତ ଜଡିତ ସେହି ସମସ୍ୟାକୁ ଅବଶିଷ୍ଟ ଭାବରେ ଗ୍ରହଣ କରାନଯାଇ ମୌଳିକ ଚରିତ୍ର ଭାବେ ବିଚାର କରାଯିବା ଉଚିତ । ଏବେ ନିକଟରେ ଜାତୀୟ

କର୍ମନିଯୁକ୍ତି ଗ୍ୟାରେଣ୍ଟି ଆଇନ୍ କରାଯାଇ ସାଧାରଣ ଲୋକଙ୍କୁ ୧୦୦ ଦିନର କାମ ଯୋଗାଇ ଦେବାକଥା କୁହାଗଲେ ମଧ୍ୟ ଏଥିପାଇଁ ସମ୍ବଳ ଅଭାବ କହି ଅର୍ଥ ଯୋଗାଇ ନଦେବା ଫଳରେ ଏହା ଦେଶ ବ୍ୟାପୀ କାର୍ଯ୍ୟକାରୀ ହୋଇ ପାରୁନି । ଏହି ନିଯୁକ୍ତି ଗ୍ୟାରେଣ୍ଟି ଠିକ୍ ଭାବରେ କାର୍ଯ୍ୟକାରୀ ହେଉଛି କି ନାହିଁ ତାହାର ତଦାରଖ ଯଥାଯଥ ଭାବେ କରାଯାଉନି । ଏଥିରୁ ଶାସକଶ୍ରେଣୀର ମତିଗତି ଜଣାପଡୁଛି । ସ୍ୱର୍ଣ୍ଣ ଚତୁର୍ଭୁଜ ରାସ୍ତା ପାଇଁ ୫୦ ହଜାର କୋଟି କିମ୍ବା ଏୟାରପୋର୍ଟ ପ୍ରୋଜେକ୍ଟ ପାଇଁ ୫୦ ହଜାର କୋଟି ଏବଂ ଦିଲ୍ଲୀ ମେଟ୍ରୋ ପ୍ରୋଜେକ୍ଟ ପାଇଁ ୨୦ ହଜାର କୋଟି ଟଙ୍କାର ଅର୍ଥ ବରାଦ କରାଯାଇ ପାରୁଛି, କିନ୍ତୁ ଯେତେବେଳେ ଗରିବ ଲୋକମାନଙ୍କର ନିଯୁକ୍ତି କଥା ଆସୁଛି, ସେତେବେଳେ ଆର୍ଥିକ ସମ୍ବଳ ଅଭାବର କଥା ଉଲ୍ଲେଖ କରାଯାଉଛି । ଯାହା ଫଳରେ ଏଦେଶରେ ଯାହା ହେବା କଥା ହେଉନାହିଁ । ଏବଂ ଗରିବକୁ ଅବଶିଷ୍ଟ ଭାବେ ବିଚାର କରାଯାଉଛି । ଏହାକୁ ସମ୍ଭ୍ରାନ୍ତମାନେ ଅତି ସହଜରେ "ଉପରୁ ତଳକୁ ଝରିବ" ବୋଲି କହି ଲୋକମାନଙ୍କ ଉପରେ ଲଦି ଦେଉଛନ୍ତି । ଏହା ଆମ ଗଣତନ୍ତ୍ରର ଦୁର୍ବଳତାକୁ ଚିତ୍ରିତ କରୁଛି ।

ଯଦି କେତେବେଳେ ଦରିଦ୍ରଲୋକମାନଙ୍କ ପାଇଁ କିଛି କର୍ମସଂସ୍ଥାନ ମିଳୁଛି, ତେବେ ତାହା ଅତ୍ୟନ୍ତ ଅସ୍ୱାସ୍ଥ୍ୟକର ଉଦ୍ୟୋଗ ମାନଙ୍କରେ ଯେଉଁଠାରେ ଆଦୌ ସୁରକ୍ଷା ବ୍ୟବସ୍ଥା ନାହିଁ । ଶ୍ରମିକମାନଙ୍କ ଉପରେ ମୂଲ୍ୟକୁ ପକାଇ ଦିଆଯାଉଛି, ଫଳରେ ସେମାନଙ୍କର ଭବିଷ୍ୟତ ଅନ୍ଧକାରମୟ ଏବଂ ଏପରିକି ଅତ୍ୟଧିକ ଆୟ ଅଧିକ ମଙ୍ଗଳ କାର୍ଯ୍ୟରେ ରୂପାନ୍ତରିତ ହେଉନାହିଁ । ଟେକ୍ନୋଲଜି ଅତି ଦ୍ରୁତଗତିରେ ପରିବର୍ତ୍ତନ ହେଉଛି ଏବଂ ନୂତନ ଭାବରେ ଭାବିବାକୁ ଆମକୁ ବାଧ୍ୟ କରୁଛି । ଗବେଷଣା କରି କୁହାଯାଇଛି ଯେ ମଣିଷ ଅଧିକ ଦିନବଞ୍ଚିବ, ତେଣୁ କାମର ପ୍ରକୃତିରେ ପରିବର୍ତ୍ତନ ଲୋଡା । ବଜାର ଏହି ଆହ୍ୱାନକୁ ସମ୍ମୁଖୀନ ହୋଇ ଯତ୍ନନେଇ ପାରିବ ନାହିଁ । କାରଣ ବଜାରର ଚରିତ୍ର ହେଉଛି ସ୍ୱଳ୍ପସମୟ ପାଇଁ । ତେଣୁ ସମାଜକୁ ଏହା ଉପରେ ନିଜର ଅଗ୍ରାଧିକାରକୁ ଚାପ ପକାଇବାକୁ ହେବ ।

ଏସବୁ ବିଷୟରେ ସଭ୍ୟତାର ପ୍ରଶ୍ନ ଜଡିତ, ବିଶେଷକରି, ମଣିଷ ସଂପର୍କରେ- ମଣିଷ କ'ଣ ଉତ୍ପାଦନ ପାଇଁ ଏକ ସୂକ୍ଷ୍ମ ଯନ୍ତ୍ର କିମ୍ବା ମନୁଷ୍ୟ ? ଯେହେତୁ ଏହି ପ୍ରତ୍ୟେକ ବିଷୟରେ ଟେକ୍ନୋଲଜି, କିମ୍ବା ବଜାର ଯୋଡା ହୋଇ ରହିଛି । ତେଣୁ ପ୍ରଶ୍ନ କରିବାକୁ ହେବ ଏହା କ'ଣ ମନୁଷ୍ୟର ଉପରେ ? ତେଣୁ ନିଯୁକ୍ତି କୁ ସ୍ଥୂଳ ବିଷୟ ଭାବରେ ପ୍ରଥମେ ଗ୍ରହଣ କରିବାକୁ ହେବ ଏବଂ ପରେ ସୁକ୍ଷ୍ମ ଭାବରେ । ବିଶ୍ୱ ପରିପ୍ରେକ୍ଷୀରେ ରାଷ୍ଟ୍ର ବିଷୟକୁ ମଧ୍ୟ ବୁଝିବାକୁ ହେବ । ଏଦୃଷ୍ଟିରୁ ଏ ବିଷୟକୁ ଚାରିଗୋଟି ପର୍ଯ୍ୟାୟରେ ଆଲୋଚନା କରିବା ଆବଶ୍ୟକ ।

୧. ବର୍ତ୍ତମାନର ଜଗତୀକରଣ ପରିପ୍ରେକ୍ଷୀରେ କି କି କାରଣ ନିଯୁକ୍ତି କୁ ବ୍ୟାହତ କରୁଛନ୍ତି । ଏ ଦୃଷ୍ଟିରୁ ସ୍ଥୂଳ ଓ ସୁକ୍ଷ୍ମ କାରଣ ଗୁଡିକୁ ବିଚାର କରିବାକୁ ହେବ ।
୨. ବୈଷୟିକ ପରିବର୍ତ୍ତନ ଓ ବିଶ୍ୱବ୍ୟାପୀ ନିଯୁକ୍ତି କୁ ଅନୁଧ୍ୟାନ କରିବା ।
୩. ବାସ୍ତବରେ ରାଷ୍ଟ୍ରରେ ସମ୍ବଳର ଅଭାବ ରହିଛି କି ?
୪. କିପରି ଭାବରେ ବିକାଶ ହୋଇପାରିବ ଏବଂ ଏହା ନିରବଚ୍ଛିନ୍ନ ହେବ । ଏବଂ ମନୁଷ୍ୟକୁ ଏକ ଯନ୍ତ୍ର ଭାବରେ ବିଚାର କରାନଯାଇ ମନୁଷ୍ୟକୁ ମନୁଷ୍ୟ ଭାବରେ ବ୍ୟବହାର କରାଯିବ ।

**<u>ବର୍ତ୍ତମାନ ପ୍ରଥମ କାରଣଟିକୁ ବିଚାର କରିବା ।</u>**

ନିଯୁକ୍ତି ସୃଷ୍ଟି ରାଜସ୍ୱ ସଂକ୍ରାନ୍ତୀୟ, ଉଦ୍ୟୋଗ, ପୁଞ୍ଜିବିନିଯୋଗ, ଟେକ୍ନୋଲଜି ଓ କୃଷି ଇତ୍ୟାଦି ନୀତି ଉପରେ ନିର୍ଭର କରେ । ତେଣୁ ଏହି ନୀତି ଗୁଡିକୁ ଯଦି ଆଲୋଚନା କରିବା ତେବେ ଜାଣି ପାରିବା ଯେ ନିଯୁକ୍ତି ସୃଷ୍ଟି କାହିଁକି ଏତେ କଷ୍ଟକର ବ୍ୟାପାର ।

ନିଯୁକ୍ତି ସୃଷ୍ଟିର ମୂଳ ଚାବିକାଠିଟି ଅର୍ଥନୈତିକ କାର୍ଯ୍ୟକ୍ରମ ଉପରେ ଆଧାରିତ ଯାହା ପୁଞ୍ଜି ବିନିଯୋଗ ଉପରେ ନିର୍ଭର କରେ ତେଣୁ ଅର୍ଥନୀତିରେ ପୁଞ୍ଜିବିନିଯୋଗ କାହିଁକି କମ୍ ହେଉଛି ଯାହା ଫଳରେ ନିଯୁକ୍ତି ସୃଷ୍ଟି ହୋଇ ପାରୁନାହିଁ ? ଯେତିକି ପୁଞ୍ଜି ମଧ୍ୟ ଅର୍ଥନୀତିର ଲଗା ଯାଉଛି, ତାଦ୍ୱାରା କିପରିକା ନିଯୁକ୍ତି ସୃଷ୍ଟି ହେଉଛି ? ନିଯୁକ୍ତିହୀନ ବିକାଶକୁ ଜାଣିବାକୁ ହେଲେ ପୁଞ୍ଜି ବିନିଯୋଗର ପ୍ରକୃତିକୁ ଜାଣିବାକୁ ହେବ । ଏହା ବ୍ୟତୀତ

ନୀତିନିର୍ଦ୍ଧାରଣ କାରୀମାନଙ୍କୁ ଅନ୍ୟାନ୍ୟ ସାମାଜିକ ଲକ୍ଷ୍ୟକୁ ହାସଲ କରିବାକୁ ହେବ ଯାହା ଅନ୍ୟ ନୀତି କାର୍ଯ୍ୟକାରୀ କରିବା ସହିତ ପୁଞ୍ଜିବିନିଯୋଗ ନୀତିକୁ ମଧ୍ୟ ଦୃଷ୍ଟିରେ ରଖିବେ । ରପ୍ତାନୀ ମଧ୍ୟ ନିଯୁକ୍ତି ସୃଷ୍ଟିକରିପାରିବ କିନ୍ତୁ ଏହା ମଧ୍ୟ ଆମଦାନୀ ଉପରେ ନିର୍ଭର କରେ । ଆମଦାନୀ ନିଯୁକ୍ତି ହ୍ରାସ କରୁଥିବାରୁ ସମୁଦାୟ ଫଳାଫଳ ନିଯୁକ୍ତି ହ୍ରାସ କରୁଛି ।

୧୯୯୧ ମସିହାପରେ ରପ୍ତାନୀ, ପୁଞ୍ଜିବିନିଯୋଗ ଇତ୍ୟାଦି ନୀତି ସଂପର୍କରେ ଜଗତୀକରଣର ପ୍ରଭାବ ରହିଛି ଯାହା ଦେଶରେ ଆରମ୍ଭ ହୋଇଛି । ଆନ୍ତର୍ଜାତିକ ମୁଦ୍ରାପାଣ୍ଠି , ବିଶ୍ୱ ବ୍ୟାଙ୍କ ଓ ବିଶ୍ୱବାଣିଜ୍ୟ ସଂଗଠନ ଯେଉଁ ନୀତି ବିଶ୍ୱବଜାର ପାଇଁ ସ୍ଥିର କରିଛନ୍ତି, ତାହା ଅନୁସାରେ ଆମ ଦେଶର ନୀତି ନିର୍ଦ୍ଧାରଣ ହେଉଛି ଓ ନିୟନ୍ତିତ ହେଉଛି । ଏହି ପ୍ରକାର ଜଗତୀକରଣ ଭାରତୀୟ ସମାଜ ମଧ୍ୟକୁ ବଜାରୀ କରଣକୁ ଜୋର ଜବରଦସ୍ତ ଭର୍ତ୍ତି କରୁଛି । ଏହା ଫଳରେ ନିଯୁକ୍ତି ସଂପର୍କରେ ଆମ ଦୃଷ୍ଟିଭଙ୍ଗୀରେ ମଧ୍ୟ ପରିବର୍ତ୍ତନ ଘଟୁଛି ।

ସ୍ୱାଧୀନତା ପରେ ଆମେ ଗ୍ରହଣ କରିଥିଲେ ଯେ ସମାଜ ବ୍ୟବସ୍ଥା ଦାରିଦ୍ର୍ୟ, ନିଯୁକ୍ତି, ନିରକ୍ଷରତା, ସ୍ୱାସ୍ଥ୍ୟ ଇତ୍ୟାଦି ପାଇଁ ଦାୟୀ ଏବଂ ସେ ଦୃଷ୍ଟିରୁ ରାଷ୍ଟ୍ର ଅର୍ଥନୀତିରେ ହସ୍ତକ୍ଷେପ କରିବା ଆବଶ୍ୟକ ଯାହାଫଳରେ ସାଧାରଣ ଲୋକ ଓ ଗରିବ ଲୋକମାନଙ୍କର ଅବସ୍ଥାରେ ପରିବର୍ତ୍ତନ ହେବ । ୧୯୯୧ ମସିହାରେ ବଜାର ପ୍ରଭାବରେ ଏହି ନୀତିରେ ୟୁଟର୍ଣ୍ଣ ହୋଇଛି ଏବଂ ବର୍ତ୍ତମାନ ନୀତି ନିର୍ଦ୍ଧାରଣକାରୀମାନେ ବିଚାର କରୁଛନ୍ତି ଯେ ଦାରିଦ୍ର୍ୟ ପାଇଁ ମନୁଷ୍ୟ ନିଜେ ଦାୟୀ ଏବଂ ଏଥିରୁ ମୁକୁଳିବାକୁ ସେମାନଙ୍କୁ କାର୍ଯ୍ୟ କରିବାକୁ ହେବ । ରାଷ୍ଟ୍ର ଖୁବ୍ କମ୍ ଭାବରେ ଅର୍ଥନୀତି ଉପରେ ହସ୍ତକ୍ଷେପ କରିବ । ବ୍ୟକ୍ତିମାନେ ନିଜେ ଦାୟୀ ରହି ସେମାନଙ୍କର ଉନ୍ନତି ପାଇଁ ବଜାର ଉପରେ ନିର୍ଭର କରିବେ ।

ତେଣୁ ନିଯୁକ୍ତି ସୃଷ୍ଟି ବଜାର ଉପରେ ନିର୍ଭର କରିବ ଏବଂ ବ୍ୟକ୍ତିବିଶେଷ ବଜାରରେ ଚାକିରୀ ଖୋଜିବେ କିମ୍ବା ସୃଷ୍ଟି କରିବେ । ରାଷ୍ଟ୍ର କର୍ମସୃଷ୍ଟିରେ କିମ୍ବା କର୍ମ କରିବାର ବ୍ୟବସ୍ଥା ବା ସର୍ବନିମ୍ନ ମଜୁରୀ ଇତ୍ୟାଦିରେ ହସ୍ତକ୍ଷେପ କରିବ ନାହିଁ ।

ଜଗତୀକରଣ କିଛି ନୂତନ ଅବସ୍ଥା ନୁହେଁ । ଏହା ପୂର୍ବରୁ ମଧ୍ୟ ଥିଲା ବ୍ୟବସାୟୀ, ଧର୍ମ ପ୍ରଚାରକ, ଅର୍ଥାନ୍ୱେଷୀ ଓ ଯୋଦ୍ଧା ଜଗତୀକରଣକୁ ରୂପଦେଇଥିଲେ । ବ୍ୟବସାୟୀମାନେ ବାଣିଜ୍ୟରେ ଅତ୍ୟଧିକ ଲାଭ ପାଇ, ଧର୍ମ ପ୍ରଚାରକମାନେ ଧାର୍ମିକ ବିଶ୍ୱାସକୁ ବ୍ୟାପ୍ତ କରାଇବା ପାଇଁ, ନୂତନ ଜମି ଅନୁସନ୍ଧାନରେ ସ୍ୱାର୍ଥନ୍ୱେଷୀ ବ୍ୟକ୍ତି ବିଶେଷ ଏବଂ ନିଜର ଶକ୍ତିବଳରେ ଅନ୍ୟକୁ ଅଧିନ କରିବା ପାଇଁ ଏ ସମସ୍ତେ ଏକତ୍ରିତ ହୋଇଥିଲେ । ଏହା ଖ୍ରୀଷ୍ଟପୂର୍ବ ୬୦୦୦ରେ ଆରମ୍ଭ ହୋଇଥିଲା ଯାହାକୁ ଆମେ ବର୍ତ୍ତମାନ ଜଗତୀକରଣ କହୁଛନ୍ତି ।

ଥୋମାସ୍ ଫ୍ରିଡମ୍ୟାନ ତାଙ୍କର ପୁସ୍ତକ ୱାଲର୍ଡ ଇଜ ଫିଆଟ୍‌ରେ କହିଛନ୍ତି, " ଯେତେବେଳେ କୌଣସି ସଭ୍ୟତା ଲୋପ ପାଇଛି ତାହା ବିସ୍ଥାପନକାରୀ, ବିଭେଦନକାରୀ ଟେକ୍ନୋଲଜିର ବିପ୍ଳବ ଯୋଗୁଁ ହୋଇଛି । ଯେପରି ଗୁଟେନବର୍ଗଙ୍କର ପ୍ରିଣ୍ଟିଂପ୍ରେସର ପ୍ରୟୋଗ ଏହା ଫଳରେ ବିଶ୍ୱ ଅତ୍ୟଧିକ ଭାବରେ ପରିବର୍ତ୍ତନ ହୋଇଛି । ମାର୍କସ ଓ ଏଞ୍ଜେଲ କମ୍ୟୁନିଷ୍ଟ ମାନିଫେଷ୍ଟୋ ପୁସ୍ତକରେ କହିଛନ୍ତି, ବୁର୍ଜୁଆ ତାର ଉତ୍ପାଦନକୁ ବିକ୍ରୀ କରିବା ପାଇଁ ସଦାସର୍ବଦା ବିଶ୍ୱବ୍ୟାପୀ ବଜାର ଖୋଜୁଛି- ପୁରୁଣା ଆବଶ୍ୟକତା ନୂତନର ସ୍ଥାନ ନେଉଛି ଏବଂ ନୂତନ ଆବଶ୍ୟକତା ତା'ର ମନମୁତାବକ ହେବା ପାଇଁ ବିଦେଶୀ ଉତ୍ପାଦନ ଉପରେ ଗୁରୁତ୍ୱ ଦେଉଛି ।୧୯୯୧ ମସିହାଠାରୁ ଆରମ୍ଭ ହୋଇଥିବା ଜଗତୀ କରଣ ଯାହା ଭାରତରେ ଆରମ୍ଭ କରାଗଲା, ତାହା ବଜାରୀ କରଣ (Marketisation) ଉପରେ ନିର୍ଭର କରୁଛି । ବଜାରର ନିଜର କୌଣସି ମୂଲ୍ୟବୋଧ ନାହିଁ ଏବଂ ଏହା ନୈତିକତାବିହୀନ । ସମାଜ ମୂଲ୍ୟବୋଧ ପ୍ରଦାନ କରେ । ତେଣୁ ବଜାର ଡ୍ରଗ୍‌ ବବାଗାରେଟ୍ ପ୍ରସ୍ତୁତ କରିବ ଯାହାକୁ ସମାଜ ଖରାପବୋଲି କହେ । ବଜାର ପ୍ରଦୂଷଣ ପ୍ରତି ଆଦୌବ୍ୟସ୍ତ ହୁଏନାହିଁ ଯଦିଓ ସମାଜ ହୁଏ । ବଜାର ଅଧିକା ଲାଭ ପାଇବା ପାଇଁ ବ୍ୟବସାୟ ସୃଷ୍ଟିକରେ ଏବଂ ଶିଶୁମାନଙ୍କୁ ବିଜ୍ଞାପନର ମାଧ୍ୟମ କରି ତାହାକୁ ନ୍ୟାୟସଙ୍ଗତ କରେ । ସମାଜ ଉପଭୋକ୍ତା ବାଦ କୁ କ୍ଷତିକାରକ ବୋଲି ବିଚାର କରେ ଏବଂ ଶିଶୁମାନଙ୍କର ମାନସିକ ସ୍ୱାସ୍ଥ୍ୟ ସୁରକ୍ଷିତ ରହିବାକୁ ଚାହେଁ ।

ବିଶ୍ୱୀକରଣ ବିଶ୍ୱାସ କରେ ଯେ ବଜାର ମାଧ୍ୟମରେ ଲାଭ ପାଇବା

ନ୍ୟାୟସମ୍ମତ ପଦ୍ଧତି ଯଦିଓ ଏହାଦ୍ୱାରା ଲୋକମାନେ ଅସୁବିଧାର ସମ୍ମୁଖିନ ହୁଅନ୍ତି । ବଜାର ଲାଭ ଆଡକୁ ସବୁବେଳେ ଯିବାବେଳେ ମାନସିକ ଆନନ୍ଦ ତା'ପାଇଁ ଗୌଣ । ବଜାରର ଆନନ୍ଦ ଜିନିଷ ଉପଭୋଗ ଉପରେ ଗୁରୁତ୍ୱ ଦିଏ ।

୧୯୯୧ ମସିହା ପରଠାରୁ ଏମ୍.ଆର.ଟି.ପି. ଆଇନ୍‌ରେ ସଂଶୋଧନ ହୋଇ ବୃହତ୍‌ଶିଳ୍ପମାନେ ବଢିବାରେ ସାହାଯ୍ୟ କରିଛି । କ୍ଷୁଦ୍ର ଉଦ୍ୟୋଗ ଗୁଡିକ ସ୍ଥାନରେ ବୃହତ୍ତ ଶିଳ୍ପମାନଙ୍କୁ ପ୍ରୋତ୍ସାହନ କ୍ଷୁଦ୍ର ଶିଳ୍ପଅବସ୍ଥାକୁ ସଙ୍ଗୀନ କରିଛି । ବିଦେଶୀ ଦ୍ରବ୍ୟ ଭାରତୀୟ ବଜାରରେ ପର୍ଯ୍ୟାପ୍ତ ମିଳିବା ପାଇଁ ସୀମା ଶୁଳ୍‌କରେ ରିହାତି ଦିଆଯାଇଛି । ଏହା ମଧ୍ୟ କ୍ଷୁଦ୍ର ଶିଳ୍ପ ଗୁଡିକ ପାଇଁ ଅସୁବିଧା ସୃଷ୍ଟି କରୁଛି ।

୧୯୯୧ ମସିହା ପୂର୍ବରୁ, ନିର୍ଦ୍ଦିଷ୍ଟ ପୁଞ୍ଜି ପାଇଁ କ୍ଷୁଦ୍ର ଶିଳ୍ପ ବୃହତ୍ତ ଶିଳ୍ପଠାରୁ ପ୍ରାୟ ୬ଗୁଣରୁ ଅଧିକ ଲୋକ ନିଯୁକ୍ତ କରୁଥିଲେ । ୧୯୯୧ ପରେ, ଆନ୍ତର୍ଜାତୀୟ ପ୍ରତିଯୋଗିତାର ଚାପଫଳରେ, ବର୍ତ୍ତମାନ ବୃହତ ଉଦ୍ୟୋଗମାନେ ପୂର୍ବରୁ ଯେତେଲୋକ କାମରେ ଲଗାଉଥିଲେ ତା'ର ଏକ ପଞ୍ଚମାଂଶ ମାତ୍ର ବର୍ତ୍ତମାନ କାର୍ଯ୍ୟରେ ଲଗାଉଛନ୍ତି । ଅନ୍ୟ ଅର୍ଥରେ କହିଲେ, ପୂର୍ବରୁ କ୍ଷୁଦ୍ର ଉଦ୍ୟୋଗମାନେ ଯେତେ ସଂଖ୍ୟାରେ ଲୋକ କାମରେ ଲଗାଉଥିଲେ, ତାର ୩୦ ଭାଗରୁ ଭାଗେଲୋକ ଲଗାଉଛନ୍ତି । ନୂତନ କ୍ଷେତ୍ର ପୁରୁଣା କ୍ଷୁଦ୍ର ଉଦ୍ୟୋଗ ଗୁଡିକର ସ୍ଥାନ ନେଉଛି । ଯାହା ଫଳରେ ନିଯୁକ୍ତି କ୍ଷେତ୍ର ବହୁଭାବରେ କମିବାରେ ଲାଗିଛି । ଉଦାହରଣ ସ୍ୱରୁପ ଏଟିଏମ୍ ଓ ଯାନ୍ତ୍ରୀକରଣ ଫଳରେ ଉତ୍ପାଦନ ବୃଦ୍ଧି ଘଟୁଥିବାବେଳେ ଶ୍ରମଶକ୍ତି କମିବାରେ ଲାଗିଛି । ବହୁ କଂପାନୀର ବାର୍ଷିକ ବିବରଣୀରେ ଲୋକମାନେ ଛଟେଇ ହେବା କଥା ଉଲ୍ଲେଖ କରାଯାଉଛି । ଉତ୍ପାଦନ ବଢିବାରେ ଲାଗିଛି, ଏହା ଫଳରେ ପ୍ରତ୍ୟେକ ଶ୍ରମିକ ଅନୁପାତରେ ପୁଞ୍ଜି ବଢୁଛି ଏବଂ ଅର୍ଥନୀତିରେ ଅଳ୍ପ ମାତ୍ରାରେ ନିଯୁକ୍ତି ସୁଯୋଗ ସୃଷ୍ଟି ହେଉଛି ।

ଅଣକୁଶଳୀ ଶ୍ରମଶକ୍ତି ଯେଉଁଠାରେ ଅତ୍ୟଧିକ ଦାରିଦ୍ର୍ୟ ଦେଖାଯାଏ, ସେମାନେ ବଳକା ହୋଇ ଯାଉଛନ୍ତି । ଯାହା କିଛି ମନୁଷ୍ୟ ଦ୍ୱାରା ହେବ ତାହା କେବଳ ନିମ୍ନ ଆୟର କାମ । ଯେଉଁମାନେ ବୃହତ୍ତ ଶିଳ୍ପରୁ ବିସ୍ଥାପିତ

ହେଉଛନ୍ତି, ସେମାନେ ଅର୍ଥନୀତିର ଅସଂଗଠିତ କ୍ଷେତ୍ରକୁ ପ୍ରବେଶ କରୁଛନ୍ତି ଏବଂ ଅଳ୍ପ ମଜୁରୀ ପାଉଁଛନ୍ତି । ୧୯୮୩ ମସିହାରେ ବମ୍ବେ ଲୁଗାକଳ ବନ୍ଦ ହୋଇଗଲା ପରେ ଯେଉଁପରି ପରିସ୍ଥିତି ସୃଷ୍ଟି ହୋଇଥିଲା, ବର୍ତ୍ତମାନ ବେଶୀ ଭାବରେ ଏହା ହେବାରେ ଲାଗିଛି । ପ୍ରତ୍ୟେକ ବର୍ଷ ୯ ନିୟୁତ ଯୁବପିଢି କର୍ମଶକ୍ତି ମଧ୍ୟକୁ ପ୍ରବେଶ କରିବା ବେଳେ, କେବଳ ୨ ପ୍ରତିଶତ ଭଲ ଦରମାରେ ସଂଗଠିତ କ୍ଷେତ୍ରରେ ପ୍ରବେଶ କରୁଛନ୍ତି । ଅନ୍ୟମାନେ ନିଜ ନିଜ କର୍ମ ମଧ୍ୟରେ ରହିବାକୁ ବାଧ୍ୟ । ଏହା ଫଳରେ ଯେଉଁ ବିରୋଧାଭାସ ସୃଷ୍ଟି ହେଉଛି, ତାହା ଦ୍ୱାରା ବିଶେଷ କିଛି ଶିକ୍ଷିତ ଯୁବକମାନଙ୍କ ମଧ୍ୟରେ ଯେଉଁମାନେ ବହୁଉଚ୍ଚଆଶା ପୋଷଣ କରନ୍ତି ସେମାଙ୍କ ମଧ୍ୟରେ ହତାଶା ସୃଷ୍ଟି ହେଉଛି । ଏହା ଉଚ୍ଚକୋଟିର ବିଜ୍ଞାପନ ଏବଂ ବଜାରର ଚାପରେ ହେଉଛି ।

ସଂଗଠିତ କ୍ଷେତ୍ରରେ, ଶ୍ରମ ଦୁର୍ବଳ ହୋଇଯିବା ଫଳରେ ଶ୍ରମକ୍ଷେତ୍ରରେ ସାମୟିକ ଶ୍ରମ ବଢିବାରେ ଲାଗିଛି । ଠିକା ଓ ସାମୟିକ ଶ୍ରମିକ ମାନଙ୍କର ସଂଖ୍ୟା ବଢୁଛି । ଯେହେତୁ ଏହି କାରଣରୁ ମଜୁରୀ ଖର୍ଚ୍ଚର ପରିମାଣ କମୁଛି ଲାଭ ବଢିବାରେ ଲାଗିଛି । ଶ୍ରମ ଶକ୍ତି ଓ ମଜୁରୀ ବିଲ୍ କମ୍ ହୋଇ ଯାଉଥିବାରୁ ମୂଲ୍ୟଯୁକ୍ତ ମଧ୍ୟ କମୁଛି । ଲାଭ ବୃଦ୍ଧି ପାଉଥିବାରୁ ମୂଲ୍ୟଯୁକ୍ତ କମୁଛି । ଏହା ଶ୍ରମ ଓ ଉତ୍ପାଦନ ମଧ୍ୟରେ ଥିବା ଅନୁପାତକୁ ମଧ୍ୟ ସୁଚାଇ ଦେଉଛି । ଏହା ଫଳରେ ସଂଗଠିତ କ୍ଷେତ୍ରରେ ପ୍ରତ୍ୟକ୍ଷ କାମ କମିବାରେ ଲାଗିଛି ।

ବେକାରୀର ସଂଖ୍ୟା ନିରୁପଣ ଠିକ୍ ଭାବରେ ହେଉନାହିଁ । ବହୁଲୋକ ଯେଉଁମାନେ ନିଯୁକ୍ତି ପାଉନାହାଁନ୍ତି, ସେମାନେ ଅନ୍ୟ କାର୍ଯ୍ୟ କରୁଛନ୍ତି, ସ୍କୁଲ ଓ କଲେଜ ମାନଙ୍କରେ କାର୍ଯ୍ୟ କରୁଛନ୍ତି । ସେଗୁଡିକ ହେଉଛି ଚାକିରୀ ପାଇବା ପୂର୍ବରୁ ସେମାନଙ୍କ ପାଇଁ ପାର୍କିଂସ୍ଥାନ । ଏହା ସତ୍ତ୍ୱେ ଯୁବକମାନଙ୍କ ମଧ୍ୟରେ ବେକାରୀ ଏତେ ବଢିଛି ଯେ ସେମାନେ କର୍ମବଜାରରେ ପ୍ରବେଶ କଲେ ମଧ୍ୟ ସଠିକ୍ କାମ ପାଉଁନାହାଁନ୍ତି । ଗ୍ରାମାଞ୍ଚଳରେ ନିଯୁକ୍ତି ସମସ୍ୟା ଅତି ଉତ୍କଟ କାରଣ ସେମାନେ ବେଶୀ କୃଷି ଉପରେ ନିର୍ଭର କରୁଛନ୍ତି ଏବଂ କୃଷିକ୍ଷେତ୍ରରେ ବିଗତ ୭ ବର୍ଷ ମଧ୍ୟରେ କର୍ମ ସଂସ୍ଥାନ ଶୂନ୍ ହୋଇଛି । ଏହା ପୁଞ୍ଜିର ଘନତା ବୃଦ୍ଧି ଓ ଚାଷର ପରିବର୍ତ୍ତନ ଯୋଗୁଁ ଘଟୁଛି । ମହିଳାମାନଙ୍କ

କ୍ଷେତ୍ରରେ ନିଯୁକ୍ତି ଏକ ବିରାଟ ସମସ୍ୟା । ପୁରୁଷମାନେ କର୍ମସଂସ୍ଥାନ ହରାଇବା ବେଳେ କିମ୍ବା ସେମାନଙ୍କର ବାସ୍ତବ ଆୟ କମ୍ ହେବା ବେଳେ ମହିଳାମାନେ ବାଧହୋଇ କର୍ମକ୍ଷେତ୍ରକୁ ପ୍ରବେଶ କରୁଛନ୍ତି । ଏବଂ ସେମାନଙ୍କର କୁଶଳତାକୁ ବିଚାରକୁ ନେଲେ କାମ ବହୁତ କମ୍ । ସେଥିରୁ ଅଧିକ ଗୃହ ମଧ୍ୟରେ ଆବଦ୍ଧ ରହିଥିବା ହେତୁ ସେମାନଙ୍କୁ ବେକାରୀ ତାଲିକାରେ ଗଣନା କରାଯାଉଁ ନାହିଁ କାରଣ ସେମାନଙ୍କର ବାସ୍ତବ ସମସ୍ୟା ପରିସଂଖ୍ୟାନରେ ପ୍ରତିଫଳିତ ହେଉନାହିଁ ।

ସଂକ୍ଷେପରେ କହିଲେ ଗ୍ରାମାଞ୍ଚଳର ଯୁବପିଢି ଓ ମହିଳା ମାନଙ୍କ ମଧ୍ୟରେ ବେକାରୀ ଅତି ଉତ୍କଟ । ବିଶେଷ କରି କଣଠେସା ହୋଇଥିବା ଲୋକମାନଙ୍କ ମଧ୍ୟରେ । ପୁନଶ୍ଚ ଏମାନଙ୍କ ମଧ୍ୟରୁ ଅଧିକାଂଶଙ୍କୁ ବେକାର ବୋଲି ବିଚାର କରାଯାଉନାହିଁ କାରଣ ସେମାନେ କର୍ମପାଇଁ ଅପେକ୍ଷା କରିଛନ୍ତି କିମ୍ବା ପରେ କାମ କରୁଛନ୍ତି । ସେମାନେ ସମସ୍ତେ ଅନପୌଚାରିକ କ୍ଷେତ୍ରକୁ ପ୍ରତିନିଧିତ୍ୱ କରୁଛନ୍ତି, ଯାହାର ପରିସଂଖ୍ୟାନ ସଂଗ୍ରହ କରିବା କଷ୍ଟକର ବ୍ୟାପାର । ବାସ୍ତବରେ ପରିସଂଖ୍ୟାନ ତଥ୍ୟଠାରୁ ବେକାରୀ ବେଶୀ ।

ବହୁ ସମୟରେ ଯୁକ୍ତି କରାଯାଉଛି ଯେ ଲୋକମାନେ ନିଜ ପାଇଁ କାମ ଯୋଗାଡ କରିବେ । ଆଧୁନିକ ଅର୍ଥନୀତିରେ ସବୁଠାରୁ ଉତ୍କୃଷ୍ଟ ସମୟରେ ମଧ୍ୟ କର୍ମ ସଂସ୍ଥାନର ଅସୁବିଧା ରହିଛି । କାରଣ ଆତ୍ମ ନିଯୁକ୍ତି ପାଇଁ ପୁଞ୍ଜି ସଂଗ୍ରହରେ ଗରିବ ବେକାରୀ ମାନଙ୍କ ନିକଟରେ ସମସ୍ୟା ରହିଛି । ଯେଉଁଠାରେ ନିଯୁକ୍ତିକୁ ରକ୍ଷା କରିବା ପାଇଁ ସଂଗ୍ରାମ କରିବାକୁ ପଡୁଛି, ସେଠାରେ କ'ଣ ନିଯୁକ୍ତି ସୃଷ୍ଟି କରିବା ଏତେ ସହଜ ? ଚାରିଆଡେ ଦୁର୍ନୀତିକୁ ଦେଖିଲେ ନିଯୁକ୍ତି ସୃଷ୍ଟି କରିବାରେ ସମସ୍ୟା ରହିଛି । ସହର ମାନଙ୍କରେ ଛୋଟ ଛୋଟ ବ୍ୟବସାୟ ଚଳାଇବା ପାଇଁ ପୁଲିସ୍, ମ୍ୟୁନିସପାଲିଟି କର୍ମକର୍ତ୍ତାମାନଙ୍କୁ ଅର୍ଥଦେବା ବ୍ୟତିତ ସ୍ଥାନୀୟ ଦାଦା ଓ ରାଜନୈତିକନେତା ମାନଙ୍କୁ ମଧ୍ୟ ଦାଦାବଟି ଦେବାର ଆବଶ୍ୟକତା ରହିଛି ।

ବଜାର ସପକ୍ଷବାଦୀ ମାନଙ୍କର ଯୁକ୍ତି ହେଉଛି ଯେ ଉନ୍ମୁକ୍ତ ବଜାରରେ, ଯେହେତୁ ଲୋକମାନେ ବେକାର ଅଛନ୍ତି, ମଜୁରୀ କମିବ ଏବଂ ଯେହେତୁ ଶ୍ରମ ଶସ୍ତା ସେହେତୁ ଅଧିକ ନିଯୁକ୍ତି ସୃଷ୍ଟି ହେବ ।

ଏହା ବାସ୍ତବରେ ଠିକ୍‌ନୁହେଁ କାରଣ ନୂତନ କର୍ମ ଅନେକାଂଶରେ କୁଶଳତା ଉପରେ ନିର୍ଭର କରେ ଏବଂ ଯେଉଁମାନେ ବେକାର ରହୁଛନ୍ତି ସେମାନଙ୍କ ପାଖରେ ଆବଶ୍ୟକୀୟ କୁଶଳତା ନଥାଇପରେ ଏବଂ ସେଥିପାଇଁ ହୁଏତ କର୍ମ ସଂସ୍ଥାନ ହରାଉଛନ୍ତି । ଯଦି ବି ଏହା ସଠିକ୍ ହୁଏ ତଥାପି ଏହା ଆପଣାଛାଏଁ ହେବ ନାହିଁ କିମ୍ବା ଅତି ସହଜ ଢଙ୍ଗରେ ନୁହେଁ ଏବଂ ଏଥିପାଇଁ ଅତ୍ୟଧିକ ମୂଲ୍ୟ ମନୁଷ୍ୟକୁ ଦେବାକୁ ହେବ । ଗରିବଲୋକମାନଙ୍କ ପାଇଁ ବଞ୍ଚିବାର ମଜୁରୀ ନାହିଁ । ସେମାନେ ଅସ୍ୱାସ୍ଥ୍ୟକର ପରିବେଶରେ ରହୁଛନ୍ତି ଏବଂ ରୋଗ, ପୁଷ୍ଟିକର ଆହାରର ଅଭାବ ଇତ୍ୟାଦି କମିବା ଫଳରେ ସେମାନଙ୍କର କାମକରିବାର ଶକ୍ତି ମଧ କମ୍ । ଗରିବ ଲୋକମାନେ ବଞ୍ଚିବାର ଦାଢରେ ରହିଛନ୍ତି, ଏବଂ ସେମାନଙ୍କର ଆୟ କମିଯିବା ଦ୍ୱାରା ସେମାନଙ୍କର ଦୁର୍ଦ୍ଦଶା ଆହୁରି ବଢୁଛି । ଯଦି ଅସ୍ଥାୟୀ ଭାବରେ ମଧ ମଜୁରୀ କମେ, ବହୁତ ଲୋକ ହୁଏତ ଆଦୌ ତିଷ୍ଠି ପାରିବେ ନାହିଁ ।

ପୁଞ୍ଜିବାଦୀ ଅର୍ଥନୀତି ବ୍ୟବସ୍ଥାରେ ଯେଉଁମାନେ ସଂପଦ କୁ ନିୟନ୍ତ୍ରଣ କରୁଛନ୍ତି, ସେମାନେ ହିଁ ନିଯୁକ୍ତି ସୃଷ୍ଟି କରିବାର ଦକ୍ଷତା ରଖୁଛନ୍ତି । ସେମାନେ ପୁଞ୍ଜି ବିନିଯୋଗ କରି ଏହା କରିପାରିବେ । ଭାରତରେ, ବହୁଅଂଶର ଲୁକ୍‌କାୟିତ ସଂପଦ କୁ ଅର୍ଥନୀତି ମଧ୍ୟରୁ ହୁଏତ ଅଲଗା ରଖାଯାଇଛି କିମ୍ବା ଅଣ ଉତ୍ପାଦନକାରୀ ସଂପଦଭାବେ ବ୍ୟବହାର କରାଯାଉଛି ଯାହା ଖୁବ୍ ଅଳ୍ପ କିମ୍ବା ଆଦୌ ନିଯୁକ୍ତି ସୃଷ୍ଟି କରୁନାହିଁ କିମ୍ବା ନଷ୍ଟ କରାଯାଉଛି । କର୍ମସଂସ୍ଥାନ ଅଣ ଉତ୍ପାଦନ କାମ ଓ ନଷ୍ଟ ହେବା ଯୋଗୁଁ ଘଟୁଛି କିନ୍ତୁ ଭବିଷ୍ୟତ ଉପରେ ଓ ସଭ୍ୟତା ଉପରେ ଏହାର ବିପରୀତ ପ୍ରଭାବ ଗଭୀର ।

ସରକାର ସଂପଦ ସଂଗ୍ରହ ଓ ତା'ର ବିନିଯୋଗକୁ ସାହାଯ୍ୟକରି ପାରିବେ । ୧୯୯୧ ମସିହା ପୂର୍ବରୁ ସରକାର ଅର୍ଥନୀତିରେ ଗୋଟିଏ ବଡ ଭୂମିକା ପାଳନ କରୁଥିଲେ ଏବଂ ସରକାରୀ ଉଦ୍ୟୋଗ ଅର୍ଥନୀତିକୁ ଉଚ୍ଚକୁ ନେବାପାଇଁ, ନିୟନ୍ତ୍ରଣ କରିବା ପାଇଁ ଉଦ୍ଦିଷ୍ଟ ଥିଲା । କିନ୍ତୁ ୧୯୯୧ ମସିହା ପରଠାରୁ, ରାଷ୍ଟ୍ର କୌଶଳର ସହ ପଛକୁ ଯାଇଛି ଏବଂ ଘରୋଇ କ୍ଷେତ୍ର ଆଗକୁ ବଢିଛି । ଫଳରେ ପୁଞ୍ଜି କେତେକ ଅଳ୍ପ ସଂଖ୍ୟକଙ୍କ ନିୟନ୍ତ୍ରଣରେ ରହିଛି ଏବଂ ବିଶେଷକରି ଯେଉଁମାନଙ୍କର ଆନ୍ତର୍ଜାତିକ ପୁଞ୍ଜି

ସହିତ ସଂପର୍କ ରହିଛି । ସେମାନେ ଆନ୍ତର୍ଜାତିକ ବଜାରକୁ ଦୃଷ୍ଟିରେ ରଖି ପୁଞ୍ଜି ଘଟାଉଛନ୍ତି । ଭାରତୀୟ ଗରିବ ମାନଙ୍କର ଆବଶ୍ୟକତାକୁ ଚାହୁଁ ନାହାଁନ୍ତି । ଫଳରେ ପୁଞ୍ଜି ଓ ଶ୍ରମ ମଧ୍ୟରେ ବର୍ଦ୍ଧିତ ସଂପର୍କ ଏବଂ କୃଷି , ଗ୍ରାମାଞ୍ଚଳ ଓ ପଛୁଆଅଞ୍ଚଳରେ ପୁଞ୍ଜିନିବେଶର ଅଂଶ କମିବାରେ ଲାଗିଛି । ଉଦାହରଣ ସ୍ୱରୂପ ଋଣ ଓଜମାର ପରିମାଣ ଓଡ଼ିଶାରେ ଥିବା ବ୍ୟାଙ୍କ ମାନଙ୍କରେ ସର୍ବଭାରତୀୟ ଆଭରେଜ୍ ୫୦ ପ୍ରତିଶତ । ଓଡ଼ିଶା କେବଳ ଆବଶ୍ୟକୀୟ ସଞ୍ଚୟ ସଂଗ୍ରହ କରି ପାରୁନି ବରଂ ୫୦ ପ୍ରତିଶତ ରାଜ୍ୟ ବାହାରକୁ ଚାଲିଯାଉଛି । ତେଣୁ ଓଡ଼ିଶା ପଛୁଆ ରାଜ୍ୟ ହୋଇ ରହିଥିବ ଯଦି ସରକାର ଦୃଢତାର ସହିତ ଏହାର ପ୍ରତିରୋଧ ନକରିବେ ।

ଭାରତର ସମ୍ଭ୍ରାନ୍ତ ବର୍ଗ ଏହି ଘଟଣା ପ୍ରତି ଅଣଦେଖା କରୁଛନ୍ତି କାରଣ ସେମାନଙ୍କ ନିକଟରେ ନିଜକୁ ବିଶ୍ୱୀକରଣରେ ଆନ୍ତର୍ଜାତୀୟ ସଂଭ୍ରାନ୍ତ ସହିତ ଯୋଗହେବାର ଲକ୍ଷ୍ୟ ରହିଛି । ସେମାନଙ୍କର ରାଷ୍ଟ୍ର ସହିତ ଭାଗବତ ସଂପର୍କ ଅତ୍ୟନ୍ତ ଦୁର୍ବଳ । ସେମାନଙ୍କ ନିକଟରେ ବିକାଶର ଅର୍ଥ ହେଉଛି ଅତ୍ୟାଧୁନିକ ଆନ୍ତର୍ଜାତିକ ଉତ୍ପାଦିତ ଦ୍ରବ୍ୟ (ଯଥା- କାର, କମ୍ପୁଟର ଇତ୍ୟାଦି ) ଛୁଟିରେ ବିଦେଶଭ୍ରମଣ, ପିଲାମାନଙ୍କୁ ଶିକ୍ଷାପାଇଁ ବିଦେଶକୁ ପଠାଇବା କିମ୍ବା ନିଜର ସ୍ୱାସ୍ଥ୍ୟସେବା ପାଇଁ ବିଦେଶ ଗସ୍ତ । ବିକାଶର ଅର୍ଥ ନୁହେଁ ଗରିବମାନଙ୍କ ଜୀବନଧାରଣର ମାନର ଉନ୍ନତି । ତେଣୁ ଦାରିଦ୍ର୍ୟ, ବେକାରୀ ଓ ମଜୁରୀ ହ୍ରାସ ସେମାନଙ୍କ ପାଇଁ କୌଣସି ଯାଏ ଆସେ ନାହିଁ । ସମ୍ଭ୍ରାନ୍ତ ବର୍ଗ କ'ଣ ଘଟୁଛି ସେଥିପାଇଁ କେବଳ ଚକିତ ହେବାବେଳେ ନିଜସ୍ୱାର୍ଥ ବ୍ୟତୀତ ଅନ୍ୟ କୌଣସି କାର୍ଯ୍ୟକରିବାକୁ ପ୍ରସ୍ତୁତ ନୁହଁନ୍ତି ।

ଜଗତୀକରଣ ଫଳରେ, ଆନ୍ତର୍ଜାତିକ ସ୍ତରରେ ଶ୍ରମିକମାନଙ୍କ ମଧ୍ୟରେ ଶ୍ରମବିଭକ୍ତ ହେବାରେ ଲାଗିଛି । ବିକଶିତ ରାଷ୍ଟ୍ରମାନଙ୍କରେ ଅତିଉନ୍ନତ ଓ ଉଚ୍ଚମାନର ଟେକ୍ନୋଲଜି ବ୍ୟବହାର ହେଉଥିବାବେଳେ ବିକାଶଶୀଳ ରାଷ୍ଟ୍ରରେ ପରିବେଶକୁ ଦୂଷିତ କରୁଥିବା ନିମ୍ନମାନର ଟେକ୍ନୋଲଜି ବ୍ୟବହାର କରାଯାଉଛି । ହୁଏତ ଏହାଦ୍ୱାରା ଅଧିକ ନିଯୁକ୍ତି ସୃଷ୍ଟି ହୋଇପାରେ କିନ୍ତୁ ଏହା ଶ୍ରମ ଓ ବିକାଶଶୀଳ ରାଷ୍ଟ୍ର ଉପରେ ଅଧିକ ଆର୍ଥିକ ବୋଝ ପକାଇବ । ଭାରି କେମିକାଲ କାଗଜ, ଶିଶା ( ମେଟାଲ) ଚମଡା

ପ୍ରସେସିଂ ଇତ୍ୟାଦି ବିକାଶଶୀଳ ରାଷ୍ଟ୍ରରେ ପ୍ରଦୂଷଣକୁ ଅତି ମାତ୍ରାରେ ଦୂଷିତ କରୁଛି । ଏହା ଶ୍ରମିକମାନଙ୍କର ସ୍ୱାସ୍ଥ୍ୟ ଉପରେ ଖରାପ ପ୍ରଭାବ ପକାଉଛି ଏବଂ ସେମାନଙ୍କୁ ବିକାଶର ମୂଲ୍ୟ ଦେବାକୁ ହେଉଛି ।

ଅନ୍ୟ ପକ୍ଷରେ କହିଲେ, ବର୍ତ୍ତମାନର ଯେଉଁ ନୂତନ ନିଯୁକ୍ତି ହେଉଛି, ତାହା ପାଇଁ ଶ୍ରମିକକୁ ବହୁମୂଲ୍ୟ ଦେବାକୁ ପଡୁଛି । ପ୍ରକୃତ ମଜୁରୀ (ରିୟଲ ଓ୍ୱେଜ) ଯାତାୟତ ଖର୍ଚ୍ଚ, ସ୍ୱାସ୍ଥ୍ୟ ଓ ଅନ୍ୟାନ୍ୟ ସେବା ହେତୁ କମ୍‌ହେବାର ସମ୍ଭାବନା ବେଶୀ । ପ୍ରଦୂଷଣ ବା ସହରୀ କରଣ ହେବା ଫଳରେ ଯେ ମୂଲ୍ୟ ବଢୁଛି ତାହା ନୁହେଁ ବରଂ ବହୁସେବା କାର୍ଯ୍ୟକୁ ଘରୋଇକରଣ, ସବସିଡି ହ୍ରାସ ଓ ଲାଭ ଅଧିକ ରଖିବା ହେତୁ ଏପରି ଘଟୁଛି ।

ଅଧିକାଂଶ ସମୟରେ ଯୁକ୍ତି କରାଯାଉଛି ଯେ ଦ୍ରୁତ ବିକାଶ ଫଳରେ ବେକାରୀ ସମସ୍ୟା ସମାଧାନ ହେବ । ଗତ କିଛି ବର୍ଷର ଆନ୍ତର୍ଜାତୀୟ ବା ଭାରତୀୟ ଅନୁଭବରୁ ଏପରି ଘଟୁଛି ବୋଲି କୁହାଯାଇନାହିଁ । ଚୀନ୍ ଗତ ୨୦ ବର୍ଷ ମଧ୍ୟରେ ବାର୍ଷିକ ୯ ପ୍ରତିଶତ ବଢିବାର ଲାଗିଛି । କିନ୍ତୁ ଏହା ସତ୍ତ୍ୱେ ଗ୍ରାମାଞ୍ଚଳରେ ଅତ୍ୟଧିକ ବେକାରୀ ବଢିବାରେ ଲାଗିଛି । ଗ୍ରାମାଞ୍ଚଳରୁ ପ୍ରତ୍ୟେକବର୍ଷ ପ୍ରାୟ ୧୦୦ ନିୟୁତ ଲୋକ କାମଦାମ ଖୋଜିବାରେ ବାହାରକୁ ଚାଲି ଯାଉଛନ୍ତି । ଭାରତରେ ଏହି ବେକାରୀ ଅତ୍ୟନ୍ତ ଉତ୍କଟ, ବିଶେଷକରି ୮୦ ଦଶକରେ ଯେତେବେଳେ ଏହି ସମୟରେ ବିକାଶର ହାରଥିଲା ୫.୨% । ସଂକ୍ଷେପରେ କହିଲେ, ବିକାଶ କେବଳ ସମସ୍ୟାର ସମାଧାନ କରି ପାରିବ ନାହିଁ । ବେକାରୀକୁ ସମାଧାନ କରିବାକୁ ବିତରଣ ଓ ଟେକ୍ନୋଲଜି କୁ ମନେ ରଖିବାକୁ ହେବ ।

ସମ୍ଭ୍ରାନ୍ତମାନେ ନିଜର ସଂକୀର୍ଣ୍ଣ ସ୍ୱାର୍ଥ ଦୃଷ୍ଟିରୁ ଯୁକ୍ତି କରନ୍ତି ଯେ ରାଷ୍ଟ୍ର ସମଗ୍ର ବିଶ୍ୱଠାରୁ ଅଲଗା ହୋଇ ପାରିବ ନାହିଁ । ସେମାନେ ଯୁକ୍ତି କରନ୍ତି ଯେ ଉତ୍ତର କୋରିଆ, ମଇମାର (ବର୍ମା) ଆଲବାନିଆ, ସୋଭିଏଟ୍ ୟୁନିୟନ ପ୍ରଭୃତି ଏହିପରି କୌଶଳ ଅବଲମ୍ବନ କରିଥିବା ହେତୁ ଅସଫଳ ହୋଇଛନ୍ତି ।

ଏହିପରି ଯୁକ୍ତି କେବଳ ଆତ୍ମ- ସନ୍ତୋଷ ( ସେଲଫ- ସର୍ଭିଙ୍ଗ)

ସମଗ୍ର ବିଶ୍ୱ ବିକାଶ ଲାଭ କରୁଛି ଯଦିଓ ଏହା ସଂପୂର୍ଣ୍ଣ ବନ୍ଦ ହୋଇ ରହିଛି ଏବଂ ଅନ୍ୟ କୌଣସି ବିଶ୍ୱ ସହିତ ବାଣିଜ୍ୟ କରୁ ନାହାଁନ୍ତି । ଉପରୋକ୍ତ ରାଷ୍ଟ୍ରମାନଙ୍କର ବିଫଳ ହେବାର କାରଣ ହେଉଛି ଗଣତନ୍ତ୍ରର ଅଭାବ, ଆରମ୍ଭ କରିବା ପାଇଁ ପଛଘୁଞ୍ଚା ଏବଂ ଆମେରିକା ନେତୃତ୍ୱରେ ସବୁଠାରୁ ଉନ୍ନତ ପୁଞ୍ଜିବାଦୀ ରାଷ୍ଟ୍ର ଯେଉଁମାନଙ୍କର ଅର୍ଥନୀତି ଭାଙ୍ଗି ପଡିଛି । ଏହି ରାଷ୍ଟ୍ର ଗୁଡିକ ଅବରୋଧ ମାନସିକତା ଦ୍ୱାରା ଆକ୍ରାନ୍ତ ହୋଇଥିବା କାରଣରୁ ଶାସକ ସଂଭ୍ରାନ୍ତ ଶ୍ରେଣୀ କ୍ଷମତା ଅକ୍ତିଆର କରି ସେମାନଙ୍କର ସଂକୀର୍ଣ୍ଣ ସ୍ୱାର୍ଥର ସୁରକ୍ଷା ପାଇଁ ସେହିଦେଶର ଅର୍ଥନୀତିକୁ ଦୁର୍ବଳ କରି ପକାଇଛନ୍ତି । ସେମାନଙ୍କର ରୁଦ୍ଧ ଅର୍ଥନୀତିଯୋଗୁଁ ବିଫଳତା ହୋଇନି ବରଂ ସେମାନଙ୍କର ଶାସକ ଶ୍ରେଣୀର ଚରିତ୍ର ଓ ବାହ୍ୟଚାପ ହେତୁ ଘଟିଛି ।

ଉପନିବେଶବାଦ ସମୟରେ, ଭାରତ ଓ ଅନ୍ୟାନ୍ୟ ଉପନିବେଶମାନେ ପ୍ରାୟ କେତେକାଂଶରେ ମୁକ୍ତ ଥିଲେ କିନ୍ତୁ ସେମାନେ ବିକାଶ ଲାଭ କରି ପାରିଲେ ନାହିଁ ଯାହାଫଳରେ ସାମାଜିକ ଅବସ୍ଥାରେ ଭୟଙ୍କର ଅବନତି ଘଟିଲା । ଏହା ବ୍ୟତୀତ ଶାସକର ପ୍ରକୃତି ମଧ୍ୟ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସ୍ୱାଧୀନତା ପରେ ଭାରତ ଅଳ୍ପ ଉନ୍ମୁକ୍ତ ହୋଇଥିଲା । ଯାହାଫଳରେ ତାହାର ବିକାଶର ହାର ଓ ସାମାଜିକ ସୂଚକ ଖୁବ୍ ନାଟକୀୟ ଭାବରେ ବଢିଗଲା । ଅଧିକାଂଶ ସ୍ୱଚ୍ଛ ଅର୍ଥନୀତି ବ୍ୟବସାୟ ଉପରେ ଅତ୍ୟଧିକ ନିର୍ଭର କରନ୍ତି ଏବଂ ଅଧିକ ଉନ୍ମୁକ୍ତ କିନ୍ତୁ ଏହାର ଅର୍ଥନୁହେଁ ଯେ ସେମାନେ ଭଲ କରିବେ । ତେଣୁ କେବଳ ଜଗତୀକରଣ ଅର୍ଥାତ୍ ଉନ୍ମୁକ୍ତ କରିଦେବା ଦ୍ୱାରା ବିକାଶ ହେବ ନାହିଁ ।

ବର୍ତ୍ତମାନର ଜଗତୀକରଣ ଓ ରାଷ୍ଟ୍ରର ଶାସକମାନଙ୍କର ଏହା ହେଉଛି କାର୍ଯ୍ୟ । ବିକାଶ ହେବା ଅର୍ଥ ହେଉଛି ପର୍ଯ୍ୟାପ୍ତ ପରିମାଣର ନିଯୁକ୍ତି ସୃଷ୍ଟି ହେବା ।

୧୯୯୧ ମସିହାପରେ ଭାରତରେ ଶ୍ରମ ଦୁର୍ବଳ ହୋଇ ପଡିଛି । ଏହା ପୂର୍ବରୁ ମଧ୍ୟ ସେତେ ଶକ୍ତିଶାଳୀ ନଥିଲା କାରଣ ସମୁଦାୟ ଶ୍ରମଶକ୍ତିର ମାତ୍ର ୭ ପ୍ରତିଶତ ୟୁନିୟନ ସଭ୍ୟ ଭୁକ୍ତ । ଏହା ଅବସର ହେତୁ ଓ ଛଟେଇ ହେତୁ ଆହୁରି ଦୁର୍ବଳ ହୋଇ ଯାଇଛି । ବର୍ତ୍ତମାନ ପ୍ରତ୍ୟେକ ବ୍ୟବସାୟ

ପ୍ରତିଷ୍ଠାନରେ କେବଳ 'ହାୟାର ଆଣ୍ଡ ଫାୟାର' । କୋର୍ଟ ମଧ୍ୟ ଧର୍ମଘଟ ବିରୁଦ୍ଧରେ ମତଦେଇଛନ୍ତି । ଉଦାହରଣ ସ୍ୱରୂପ ସୁପ୍ରିମ କୋର୍ଟ ଗତ ଅଗଷ୍ଟ ୬, ୨୦୦୩ ରେ ରାୟଦେଇ କହିଛନ୍ତି ଯେ ସରକାରୀ କର୍ମଚାରୀ ମାନଙ୍କର ଧର୍ମଘଟ କରିବାର ମୌଳିକ, ଆଇନଗତ, ନୈତିକ ଓ ନ୍ୟାୟିକ ଅଧିକାର ନାହିଁ । ୧୯୭୫ ମସିହା ପରଠାରୁ ବିଶ୍ୱୀକରଣ ହେତୁ ଶ୍ରମ ମଧ୍ୟ ଦୁର୍ବଳ ହୋଇଗଲାଣି । ବିଶେଷକରି ସୋଭିଏତ ୟୁନିୟନର ବିଲୟ, ଚୀନ୍‌ଦେଶରେ ରାଷ୍ଟ୍ରୀସ୍ତରୀୟ ପୁଞ୍ଜିବାଦ ବ୍ୟବସ୍ଥା ଏବଂ ଟେକ୍ନୋଲଜିର ପରିବର୍ତ୍ତନ ହେତୁ ବ୍ୟାପକ ଯାନ୍ତ୍ରିକ କରଣ ଏବଂ ବ୍ଲୁକଲାର ଉଦ୍ୟୋଗ କାମର କ୍ରମକ୍ଷୟିଷ୍ଣୁ ଏବଂ ହ୍ୱାଇଟ କଲର ଶ୍ରମର ଅଭିବୃଦ୍ଧି । ବିଶ୍ୱବ୍ୟାପୀ ଶ୍ରମ ଆନ୍ଦୋଳନ କମିଯିବାରେ ଲାଗିଛି ।

ଶ୍ରମ ମଧ୍ୟ ଦୁଇଭାଗରେ ବିଭକ୍ତ ହୋଇଯାଇଛି ଯଥ:- ବିକଶିତ ଓ ବିକାଶଶୀଳ ରାଷ୍ଟ୍ର, ରାଷ୍ଟ୍ର ମଧ୍ୟରେ ହ୍ୱାଇଟ୍ ଓ ବ୍ଲୁ କଲାର ଓ୍ୱାର୍କସ, ବିକାଶଶୀଳ ରାଷ୍ଟ୍ରରେ ସଗଠିତ ଓ ଅସଗଂଠିତ ଶ୍ରମିକ । ତେଣୁ ଏମାନଙ୍କୁ ସଂଗଠିତ କରିବା କଷ୍ଟକର ବ୍ୟାପାର ହୋଇ ପଡୁଛି । ଯେହେତୁ ପୁଞ୍ଜି ରାଷ୍ଟ୍ର ରାଷ୍ଟ୍ର ମଧ୍ୟରେ ପ୍ରତିଯୋଗିତା କରୁଛି, ସେମାନେ ଶ୍ରମ ଅଧିକାରକୁ ହ୍ରାସ କରୁଛନ୍ତି । ବାହାରକୁ କାମଦେବା ( ଆଉଟ୍ ସୋରସିଙ୍ଗ) ହେଉଛି ଏହିପରି ଗୋଟିଏ ପ୍ରଧାନ ଆଲୋଚ୍ୟ ବିଷୟ ଯାହା ଶ୍ରମିକ ଶ୍ରେଣୀକୁ ବିଶ୍ୱବ୍ୟାପୀ ଦୁର୍ବଳ କରୁଛି । ପୁଞ୍ଜି ଏହି ବିଷୟକୁ ନେଇ ରାଷ୍ଟ୍ର ମାନଙ୍କଠାରୁ ଅଧିକ ରିହାତି ଆଦାୟ କରିବାକୁ ଚେଷ୍ଟା କରୁଛି । ଏହି ସମସ୍ତ କାରଣ ଏକ ନିଯୁକ୍ତିହୀନ ବିକାଶ ସୃଷ୍ଟି କରୁଛି ।

ନିଯୁକ୍ତି ଅଭାବ ହେତୁ କଣଠେସା ହୋଇଥିବା ଲୋକମାନେ ଯେଉଁମାନେ ଅତ୍ୟନ୍ତ ଦାରିଦ୍ର୍ୟରେ ସଡୁଛନ୍ତି, ସେମାନେ କଷ୍ଟ କରୁଛନ୍ତି । ଏଥିରୁ ପ୍ରାୟ ଅଧିକାଂଶ ଦଳିତ । ସରକାରୀ ଉଦ୍ୟୋଗରେ ସ୍ଥାନ ସଂରକ୍ଷଣ ଯାହା ସେମାନଙ୍କୁ ଉପରକୁ ଉଠାଇବାରେ ସାହାଯ୍ୟ କରନ୍ତା ତାହା ମୂଲ୍ୟହୀନ ହୋଇ ପଡିଛି, କାରଣ ଏହି କ୍ଷେତ୍ରରେ ନିଯୁକ୍ତିର ସଂଖ୍ୟା କମିବାରେ ଲାଗିଛି । ସଂଗଠିତ ଘରୋଇ ଉଦ୍ୟୋଗରେ ସ୍ଥାନ ସଂରକ୍ଷଣ କରିବା ପାଇଁ ଦାବୀ ହେଉଛି କିନ୍ତୁ ଏହାକୁ ମଧ୍ୟ ପ୍ରତିରୋଧ କରାଯାଉଛି । ଭାତରୀୟ ସଂଭ୍ରାନ୍ତ ବର୍ଗ ଅତୀତରେ ଯେଉଁ ଐତିହାସିକ ଭୁଲ ହୋଇଛି, ସେଥିପାଇଁ ଘରୋଇ

ଉଦ୍ୟୋଗରେ ସ୍ଥାନ ସଂରକ୍ଷଣ କରି ସେହି ତ୍ରୁଟିକୁ ସଂଶୋଧନ କରିବାକୁ ଚାହୁଁ ନାହିଁ । ଭାରତୀୟ ବ୍ୟବସାୟୀ ମାନେ ଯୁକ୍ତି କରୁଛନ୍ତି ଯେ ଜଗତୀ କରଣରେ ସେମାନେ ସଂରକ୍ଷଣ କରି ପାରିବେ ନାହିଁ । କାରଣ ଏହା ଦକ୍ଷତା ହ୍ରାସ କରିବ, ଯଦିଓ ଏହା ସଠିକ୍ ନୁହେଁ । ଏବଂ ଯଦି ବି ସତ୍ୟ ହୋଇଥାଏ, ଏହାକୁ ରାସ୍ତା ବାହାର କରି ପ୍ରତିରୋଧ କରାଯାଇପାରେ । ଏହାର ପ୍ରଭାବକୁ କ୍ଷୁର୍ଣ୍ଣ କରିବା ପାଇଁ ଟିକସ ଲଗାଯାଇପାରେ ଏବଂ ରପ୍ତାନୀ ପାଇଁ ସବସିଡି ଦିଆଯାଇପାରେ । ସଂପତ୍ତି ଆହରଣ କରିବା କ'ଣ ଦକ୍ଷ ଯନ୍ତ୍ର ? ପରିଷ୍କାର ଭାବରେ ନୁହେଁ, କିନ୍ତୁ ବ୍ୟବସାୟ ଦକ୍ଷତା ଅଭାବରୁ ହୁଏ ନାହିଁ । ଦାରିଦ୍ର୍ୟ ସଂପର୍କରେ ମଧ୍ୟ ଏହା ଯୁକ୍ତି କରାଯାଇ ପାରେ ଯେ ଏହା ମଧ୍ୟ ଅର୍ଥନୀତିକୁ ସୃଷ୍ଟି କରିପାରିବ ।

ଦୁର୍ଭାଗ୍ୟବଶତଃ ଦାରିଦ୍ର୍ୟ ମାପ କରିବାରେ ବହୁ ଭୁଲ ହିସାବ କରାଯାଉଛି । ଏହା ପରିଷ୍କାରଯେ ଯେଉଁଠାରେ ନିମ୍ନ ନିଯୁକ୍ତି ରହିଛି, ମଜୁରୀ ବୃଦ୍ଧି ଘଟିଲେ ମଧ୍ୟ ଦାରିଦ୍ର୍ୟ ବଢିବାକୁ ଲାଗିବ । ଯେହେତୁ ଅନ୍ୟାନ୍ୟ ଦ୍ରବ୍ୟର ମୂଲ୍ୟବୃଦ୍ଧି ଘଟୁଛି, ଦାରିଦ୍ର୍ୟ ବଢିପାରେ । ଲୋକମାନଙ୍କର ଖାଦ୍ୟଗ୍ରହଣ ତଥ୍ୟରୁ ଦେଖାଯାଏ ଯେ ଭାରତରେ ଦାରିଦ୍ର୍ୟ ବଢିବାରେ ଲାଗିଛି । ୯୦ ଦଶକରେ ମୁଣ୍ଡପିଛା ଖାଦ୍ୟଦ୍ରବ୍ୟର ବ୍ୟବହାର ଭାରତରେ କମିଛି । ଅଧିକ ବିକଶିତ ରାଷ୍ଟ୍ରମାନଙ୍କରେ ଏହା ଅଧିକ ଥିବାହେତୁ ସୂଚୀତ କରେ ଯେ ବିକାଶ ସହିତ ଏହା ବଢିବ । ଯଦି ଏହା କମ୍ ହେଉଥାଏ, ତେବେ ଗରିବ ଲୋକମାନେ କମ୍ ବ୍ୟବହାର କରୁଥିବାରୁ ଘଟୁଛି ।

ନିଯୁକ୍ତିହୀନ ବିକାଶର ମୌଳିକ କାରଣ ହେଉଛି ଏକ ପଛୁଆ ଜଗତୀକରଣ ( ବଜାରୀକରଣ) ଯାହା ସମସ୍ତ ନୀତିକୁ ପ୍ରଭାବିତ କରୁଛି । ଏହା ପୁଞ୍ଜିବିନିଯୋଗ ହେଉ, ପୁଞ୍ଜିର ବିନାଶ ହେଉ, ଉନ୍ମୁକ୍ତ ହେଉ, ଆନ୍ତର୍ଜାତିକ ଶ୍ରମବିଭାଜନ ହେଉ, ଶ୍ରମକୁ ଦୁର୍ବଳ କରିବାକୁ ହେଉ କିମ୍ବା ବିକାଶର ପ୍ରକୃତି ଯୋଗୁହେଉ । ନିଯୁକ୍ତି ବର୍ତ୍ତମାନ ଗୌଣ- ମୁଖ୍ୟନୁହେଁ । ଏହି ସମସ୍ତ ବିକାଶର ଧାରାକୁ ନିର୍ଦ୍ଦେଶକରୁଛି ଯାହା ଫଳରେ ଯେଉଁ ସେକ୍ଟରରେ ଅଧିକ ଲୋକ ଅଛନ୍ତି, ସେଥିରେ ବିକାଶକମ୍ । ଯେତେବେଳେ ଅନ୍ୟ କ୍ଷେତ୍ରରେ ପୁଞ୍ଜିର ସଘନ ବିନିଯୋଗ ହେତୁ ଅଳ୍ପ ନିଯୁକ୍ତି ସୃଷ୍ଟି ହେଉଛି ।

## ଟେକ୍ନୋଲଜିରେ ପରିବର୍ତ୍ତନ ଓ ସାମାଜିକ ନୀତି-

ଟେକ୍ନୋଲଜିରେ ପରିବର୍ତ୍ତନ ହେତୁ ଜଗତୀକରଣ ର ଆଲୋଚ୍ୟ ବିଷୟ ଓ ନିଯୁକ୍ତି ସୃଷ୍ଟି ସଂପର୍କରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରିବାର ଅବାଶ୍ୟକତା ରହିଛି । ଉତ୍ପାଦନ ଧାରା ଅନୁସାରେ ଟେକ୍ନୋଲଜିରେ ପରିବର୍ତ୍ତନ ଶ୍ରମିକ ମାନଙ୍କୁ ବିସ୍ଥାପିତ କରୁଛି ଯଦିଓ ଏହା ଅନ୍ୟ ନିଯୁକ୍ତି ଅନ୍ୟପ୍ରକାର ଲୋକମାନଙ୍କୁ ଦେଉଛି । ଯେଉଁମାନେ ବିସ୍ଥାପିତ ହେଉଛନ୍ତି, ସେମାନେ କଠୋରତାର ସମ୍ମୁଖୀନ ହେଉଛନ୍ତି । ଏହାର ଅର୍ଥ କ'ଣ ଯେ ଆମେ ଟେକ୍ନୋଲଜି ପରିବର୍ତ୍ତନକୁ ବିରୋଧ କରିବା ? ନିଶ୍ଚିତ ଭାବେ ନୁହେଁ । ଯେଉଁମାନେ ଟେକ୍ନୋଲଜି ପରିବର୍ତ୍ତନର ଦାବୀ କରୁଛନ୍ତି ସେମାନେ କହୁଛନ୍ତି ଯେ ସେମାନଙ୍କର କାର୍ଯ୍ୟ ସାମାଜିକ ମଂଗଳ ନିର୍ମିତ ଉଦ୍ଦିଷ୍ଟ । ଏହାକୁ ଅତ୍ୟନ୍ତ ସାବଧାନତାର ସହିତ ପରୀକ୍ଷା କରାଯିବା ଦରକାର ।

ଟେକ୍ନୋଲଜି ପରିବର୍ତ୍ତନର ସାମାଜିକ ପ୍ରଭାବ ସଂପର୍କରେ ଅତ୍ୟନ୍ତ ସାବଧାନତାର ସହିତ ବିଚାର କରାଯିବା ଆବଶ୍ୟକ କାରଣ ଏହି ପରିବର୍ତ୍ତନ ସମାଜ ଉପରେ ଆର୍ଥିକ ଶୂନ୍ୟତା ନୁହେଁ କିମ୍ବା କୌଣସି ଗୋଷ୍ଠୀ ଏହାଦ୍ୱାରା ପ୍ରଭାବିତ ନୁହେଁ । ପୂର୍ଣ୍ଣ ରୂପରେ କହିଲେ, କେତେବେଳେ ଅଧିକ ଲୋକ କାମ ପାଆନ୍ତି କିନ୍ତୁ ଏହା ସର୍ବଦା ନୁହେଁ, ଯଦି ତାହା ଘଟେ ସାମାରିକ ସ୍ତରରେ, କୌଣସି ସମସ୍ୟା ନାହିଁ । କିନ୍ତୁ ଯଦି ଏହା ନଘଟେ, ତେବେ ସମାଜ ଏହାର ମୂଲ୍ୟକୁ ବିଚାର କରିବା ଉଚିତ ଏବଂ ଯେଉଁମାନେ ଏହା ଦ୍ୱାରା ଦୁର୍ଦ୍ଦଶାର ସମ୍ମୁଖୀନ ହେବେ, ସେଥିପାଇଁ ମାପକ ଠିକ୍ ହେବା ଦରକାର । ବଜାର କାହିଁକି ନିର୍ଦ୍ଧାରଣ କାରୀ ହେବ ସମାଜରେ କ'ଣ ଘଟିବ ? କିମ୍ବା ଯାହା ଘଟୁଛି, ତାହାକୁ ଠିକ୍ ବୋଲି ବିଚାର କରିବ ? ଉଦାହରଣ ସ୍ୱରୂପ ପ୍ଲାଷ୍ଟିକ ଓ କେମିକାଲର ଦୈନନ୍ଦିନ ଜୀବନ ଉପରେ ପ୍ରୟୋଗ ସଂପର୍କରେ ବିଚାର କରାଯାଉ । ଏହା ଉପରୁ ଦେଖିଲେ ସମାଜ ଉପକୃତ ହେଉଥିବା ପରିଲାଗେ କିନ୍ତୁ ଏହା ସ୍ୱଳ୍ପକାଳୀନ ଅନୁଧ୍ୟାନ । କିଏ ଅନୁଧ୍ୟାନ କରୁଛି ଏହା ଦ୍ୱାରା ଉତ୍ପନ୍ନ ହେଉଥିବା ପରିବେଶ ପ୍ରଦୂଷଣ ଓ ରୋଗର ଉତ୍ପତ୍ତି ! ସମାଜରେ ଟେକ୍ନୋଲଜିରେ ପରିବର୍ତ୍ତନ ପାଇଁ ପ୍ରକୃତ ମାପକ ରହିବା ଉଚିତ ଯାହା ଫଳରେ ସାମାଜିକ ଖର୍ଚ୍ଚ ସମସ୍ତେ ବହନ କରିବେ ଏବଂ ଏହାର ଭାଉ ଯାହା ବହୁ

ସମୟରେ ଦୁର୍ବଳ ଶ୍ରେଣୀ ଉପରେ ପଡୁଛି, ତାହା ସେମାନଙ୍କର ଉପରେ ପଡିବ ନାହିଁ ।

ପୁଞ୍ଜିବାଦୀ ସମାଜ ବ୍ୟବସ୍ଥାରେ, ପୁଞ୍ଜି କ୍ୱଚିତ ଶ୍ରମକୁ ଗୁରୁତ୍ୱ ଦିଏ । ଏହାର କାରଣ ହେଉଛି ଯେ ଆମ୍ଭେମାନେ ଶ୍ରମିକ ମାନଙ୍କଠାରୁ ଯେଉଁ କାର୍ଯ୍ୟ ଆଦାୟ କରୁଛୁ, ସେଥିପାଇଁ ମଜୁରୀଦେଉଛୁ । ଏହା ବାଦ ଟେକ୍ନୋଲଜିର ପରିବର୍ତ୍ତନ ଫଳରେ ଶ୍ରମିକ ଯେଉଁ ଦୁର୍ଦ୍ଦଶା ଭୋଗୁଛି ସେଥିପାଇଁ ଆମେ ଦାୟୀ ନୋହୁଁ । ଉତ୍ପାଦନ ହେତୁ ଯଦି ସେମାନଙ୍କର ସ୍ୱାସ୍ଥ୍ୟ ଉପରେ ପ୍ରଭାବ ପଡିଲା  କିମ୍ୱା ସେମାନେ ଛଟେଇ ହେଲେ ସେଥିପାଇଁ ସେମାନେ ଦାୟୀ । ଯଦି ଲାଭ ହେଲା, ତେବେ ପୁଞ୍ଜି ଶ୍ରମର ସ୍ଥାନଚ୍ୟୁତକୁ ଖାତିର କରେନି । ଏହା ଫଳରେ ସାମାଜିକ କଠିନତା ସୃଷ୍ଟି ହେଉଛି ଏବଂ ସାମାଜିକ ଆର୍ଥିକ ଭାର ପଡୁଛି ହୁଏତ ତତ୍‌କ୍ଷେଣାତ୍ ନହୋଇ ପାରେ ।

ବହୁବେଶୀ ଭାବରେ ଟେକ୍ନୋଲଜି ବ୍ୟବହାର କରାଯିବା ଉଚିତ ଏବଂ ଏହାର ଖର୍ଚ୍ଚ ପୁଞ୍ଜିବହନ କରିବା ଦରକାର । ଉଦାହରଣ ସ୍ୱରୁପ ଯଦି କର୍ମହାନୀ ଘଟୁଥାଏ, ତେବେ ଶ୍ରମିକକୁ ପୁନଃତାଲିମ ଦେବା ଏବଂ ତା' ଯଦି ହୋଇନପାରେ, ତେବେ ଆର୍ଥିକ ସାହାଯ୍ୟ ଦେଇ ବିକଳ୍ପ କାମ ପାଇବାର ଖର୍ଚ୍ଚକୁ ପୁଞ୍ଜିବହନ କରିବା ବିଧେୟ ।

ଯୁକ୍ତି କରାଯାଇପାରେ ଯେ ଏପରି ଅବସ୍ଥାରେ ପୁଞ୍ଜି ଟେକ୍ନୋଲଜି ପରିବର୍ତ୍ତନକୁ କାର୍ଯ୍ୟକାରୀ କରିନପାରେ ଏବଂ ଏହା ଫଳରେ ସମାଜ ହଇରାଣ ହେବ । କିନ୍ତୁ ବର୍ତ୍ତମାନ ଟେକ୍ନୋଲଜିରେ ପରିବର୍ତ୍ତନ ହେଲାଣି ଏବଂ ଏହାର ମୂଲ୍ୟକୁ ଭବିଷ୍ୟତକୁ ରଖାଯାଇଛି କିମ୍ୱା ବିଶ୍ୱର ଗରିବଙ୍କ ଉପରେ ରଖାଯାଇଛି । କିନ୍ତୁ ବାସ୍ତବତା ହେଉଛି ଏହି ମୂଲ୍ୟର  ସମସ୍ତେ ସମାନ ଭାବରେ ଅଂଶୀଦାର ହେବା ।

ଆଗୁଆ ରାଷ୍ଟ୍ରମାନଙ୍କରେ ସେମାନଙ୍କର ଆବଶ୍ୟକତାକୁ ଚାହିଁ ଟେକ୍ନୋଲଜି ଆବଶ୍ୟକ ପଡେ । ତା'ପରେ ତାହାକୁ ବିକାଶଶୀଳ ରାଷ୍ଟ୍ରମାନଙ୍କ ଉପରେ ବିଭିନ୍ନ ଉପାୟରେ ଜୋର ଜବରଦସ୍ତି ଲଦି ଦିଆଯାଏ । ସେମାନଙ୍କର ବିକାଶ ପ୍ରକ୍ରିୟାରେ ଏହା ଆବଶ୍ୟକ କି ନୁହେଁ, ତାହା ଦେଖାଯାଏ ନାହିଁ । ଭାରତର ବର୍ତ୍ତମାନ ମୁଣ୍ଡପିଛା ଆୟ ବର୍ତ୍ତମାନ ଯାହା ଆମେରିକାରେ ତାହା

୧୫୦ବର୍ଷ ତଳେଥିଲା । ଏହା ନିଜର ପ୍ରକ୍ରିୟାରେ ବିକାଶ ଲାଭ କଲା କିନ୍ତୁ ବର୍ତ୍ତମାନ ଭାରତକୁ ଆଜିର ଟେକ୍ନୋଲଜି ବ୍ୟବହାର କରିବାକୁ ବାଧ କରାଯାଉଛି । ଯାହା ଫଳରେ (କ) ଟେକ୍ନୋଲଜି ଖୁବ୍ ଶ୍ରୀଘ୍ର ପରିବର୍ତ୍ତନ ହେଉଛି । (ଖ) ଏହା ଟେକ୍ନୋଲଜିର ପର୍ଯ୍ୟାୟକୁ ଦ୍ରୁତ ଗତିରେ କୁଦା ମାରୁଛି । (ଗ) ଏହାର ସାମାଜିକ ଢାଞ୍ଚା ବର୍ତ୍ତମାନର ଟେକ୍ନୋଲଜି ପାଇଁ ସଠିକ୍ ନୁହେଁ । ଏହି ସବୁ ହେତୁ ବିଶେଷକରି କଣଠେସା ହୋଇଥିବା ଗୋଷ୍ଠୀମାନଙ୍କ ମଧ୍ୟରେ ସାମାଜିକ ଉତ୍ତେଜନା ବୃଦ୍ଧି ପାଉଛି ।

ତେଣୁ ବର୍ତ୍ତମାନ ଆଲୋଚନାର ବିଷୟ ହେଉଛିଯେ କେଉଁ ସମୟରେ ନୂତନ ଟେକ୍ନୋଲଜିର ପରିବର୍ତ୍ତନ କରି ସମାଜରେ ତାହାକୁ ପ୍ରୟୋଗ କରାଯାଇପାରେ । ବର୍ତ୍ତମାନ ମନଇଚ୍ଛା ଟେକ୍ନୋଲଜିର ପରିବର୍ତ୍ତନ କରୁଛି ଏବଂ ସମାଜ ଉପରେ କ'ଣ ପ୍ରଭାବ ହେବ ତାହାକୁ ଖାତିର କରୁନାହିଁ । ପୁନଶ୍ଚ ଯେହେତୁ ପୁଞ୍ଜି ଆଗରେ ରହିଛି, ଯାହାଫଳରେ ରାଷ୍ଟ୍ରମାନେ ପୁଞ୍ଜି ପାଇବାକୁ ନିଜନିଜ ମଧ୍ୟରେ ପ୍ରତିଯୋଗିତା କରିବାକୁ ବାଧ କରୁଛି ଏବଂ ସେମାନଙ୍କଠାରୁ ରିହାତି ନେବାକୁ ଚାହୁଁଛି । ଏହା ସାଧାରଣ ଶ୍ରମିକଙ୍କର ସ୍ୱାର୍ଥ ବିରୁଦ୍ଧରେ କାର୍ଯ୍ୟ କରୁଛି ।

ବୋଧହୁଏ, ଏଥିପାଇଁ ସରକାରଙ୍କ ପକ୍ଷରୁ ଏକ ବୃହତ ନିୟନ୍ତ୍ରଣକାରୀ ଭୂମିକାକୁ ଖୋଜିବାକୁ ହେବ ଯାହା ପୁଞ୍ଜି ଠାରୁ ମୁକ୍ତ । ବର୍ତ୍ତମାନ ସରକାର ପୁଞ୍ଜିର ଚାପରେ ଏସବୁକୁ ଦେଖୁନାହାଁନ୍ତି । ମୋଟାମୋଟି କହିଲେ, ଜନ ସଚେତନତା ଏବଂ ସରକାର ମାନଙ୍କର ଗଣତାନ୍ତ୍ରିକ କାର୍ଯ୍ୟଧାରା ଏହାକୁ ସଫଳ ଭାବେ ମୁକାବିଲା କରିପାରିବ ।

## ପୁଞ୍ଜିର ଅଭାବ ରହିଛି କି ?

ବହୁ ସମୟରେ ଯୁକ୍ତି କରାଯାଉଛି ଯେ ବିକାଶ ପାଇଁ ଆବଶ୍ୟକ ହେଉଥିବା ପୁଞ୍ଜି ଭାରତ ପାଖରେ ନାହିଁ । ପ୍ରଶ୍ନ ଆସୁଛି ବିକାଶ କାହା ପାଇଁ ? ହିଁ,ଯଦି ସମ୍ଭ୍ରାନ୍ତ ବର୍ଗ ଯେଉଁମାନଙ୍କର ସଂଖ୍ୟା ଲୋକସଂଖ୍ୟାର ୩ ପ୍ରତିଶତ ଏବଂ ସଂଖ୍ୟାରେ ୩୨ ନିୟୁତ, ସେମାନେ ଯଦି ଇଉରୋପିୟ ଜୀବନ ଶୈଳୀ ବଞ୍ଚିବାକୁ ଚାହାଁନ୍ତି, ତେବେ ଜାତୀୟ ସଂପଦ ନିଶ୍ଚେ କମ୍ ହେବ ।

ଭାରତର ମୁଣ୍ଡପିଛା ଆୟ ୪୫୦ ଡଲାର ହେବାବେଳେ ୟୁରୋପର

ମୁଣ୍ଡପିଛା ଖର୍ଚ୍ଚ ୨୫୦୦୦ ଡଲାର । ଜଣେ ୟୁରୋପୀୟ ଲୋକ ୫୫ଜଣ ଭାରତୀୟଙ୍କ ସହିତ ସମାନ । ଯଦି ୩ ପ୍ରତିଶତ ସମ୍ଭ୍ରାନ୍ତ ଭାରତୀୟ ଇଉରୋପର ଲୋକ ମାନଙ୍କର ଜୀବନଶୈଳୀ ପରି ବଞ୍ଚନ୍ତି ତେବେ ସେମାନେ ଭାରତର ୧୬୫ ପ୍ରତିଶତ ସଂପଦକୁ ବିନିଯୋଗ କରିବେ । ରାଷ୍ଟ୍ରତ ଏତେ ଉତ୍ପାଦନ କରେ ନାହିଁ ଫଳରେ ୯୭% ପାଇଁ ସଂପଦ ରହିବନାହିଁ ଓ ସେମାନେ ବଞ୍ଚି ପାରିବେ ନାହିଁ ।

ସଂଖ୍ୟାଧିକ ଲୋକମାନଙ୍କର ଆବଶ୍ୟକତା କ'ଣ ? ମୌଳିକ ଆବଶ୍ୟକତା ହେଉଛି ଖାଦ୍ୟ, ଶିକ୍ଷା, ସ୍ୱାସ୍ଥ୍ୟ, ପାନୀୟ ଜଳ, ଗୃହ ଏବଂ ପରିଷ୍କାର ପରିବେଶ । ଏଥିପାଇଁ କୌଣସି ବିଦେଶୀ ପୁଞ୍ଜିର ଆବଶ୍ୟକତା ନାହିଁ । ଆମ ପାଖରେ ଟେକ୍ନୋଲଜି ରହିଛି, ମାନବ ସମ୍ବଳ ଅଛି ଏବଂ କଞ୍ଚାମାଲ ଅଛି ଏହି ମୌଳିକ ଆବଶ୍ୟକତାକୁ ପୂରଣ କରିବା ପାଇଁ । ଆଉ ଯାହା କିଛି ମୌଳିକ ଆବଶ୍ୟକତା ରହିଛି ତାହାର ଅଭାବ ଆମଦାନୀ କରି ପୂରଣ କରାଯାଇ ପାରିବ କିମ୍ବା ଯେହେତୁ ଅନ୍ୟସ୍ଥାନରେ ଅତ୍ୟନ୍ତ ଦକ୍ଷତାର ସହିତ ଉତ୍ପନ୍ନ ହେଉଛି, ଆମର ଯାହା ବଳକା ତାହାକୁ ରପ୍ତାନୀ କରି ଆବଶ୍ୟକତାକୁ ଆମଦାନି କରାଯାଇ ପାରିବ । ଅତଏବ ଆନ୍ତଃ ସଂପଦ ସଂଖ୍ୟାଧିକ ଲୋକଙ୍କ ଆବଶ୍ୟକତା ପୂରଣ ପାଇଁ ଯଥେଷ୍ଟ କିନ୍ତୁ ଏହା ୩% ଲୋଭୀ ଲୋକଙ୍କ ପାଇଁ ନୁହେଁ । ଏଇଥିପାଇଁ ଭାରତ ଓଲଟା ନୀତି ଅନୁଯାୟୀ ଜଗତୀ କରଣ କରୁଛି ।

ଏହି ସମସ୍ୟା ଅତ୍ୟନ୍ତ ଉତ୍କଟ ହେଉଛି କାରଣ ୩ ପ୍ରତିଶତ ଲୋକଙ୍କର ଲୋଭହେତୁ ଏବଂ ସେମାନେ ଖୁବ୍‌ବେଶୀ କଳାଧନ ଆୟ କରୁଛନ୍ତି । ବାର୍ଷିକ ହାରାହାରି ଏହା ୧୦ ଲକ୍ଷ କୋଟିଟଙ୍କା ଏବଂ ତା ମଧ୍ୟରୁ ଅଧିକାଂଶ ପୁଞ୍ଜି ବାହାରକୁ ଚାଲିଯାଉଛି । ୧୯୫୦-୧୯୯୫ ମଧ୍ୟରେ ରାଷ୍ଟ୍ର ୩୦୦ ବିଲିୟନ ଡଲାର ଅର୍ଥ ହରାଇଛି । ଏଥି ମଧ୍ୟରୁ ପ୍ରଭୁତ ଅର୍ଥ ଅନୈତିକ କାରବାର ଯଥା:- ନିଶାଦ୍ରବ୍ୟ, ଚୋରା କାରବାର, ମାଫିଆ ଓ ଅନ୍ୟାନ୍ୟ ଅନାବ୍ୟଶ୍ୟକ ଉପଭୋକ୍ତା ଦ୍ରବ୍ୟ ବ୍ୟବହାରରେ ଖର୍ଚ୍ଚ ହୋଇଛି । ତେଣୁ ଯେଉଁ ରାଷ୍ଟ୍ରରେ ପୁଞ୍ଜି ଅଭାବ ହେବାକଥା, ସେଠାରୁ ପୁଞ୍ଜି ଅନ୍ୟତ୍ର ସ୍ଥାନାନ୍ତରିତ ହେଉଛି ଯାହା ରାଷ୍ଟ୍ରର ବିକାଶ ପାଇଁ ବ୍ୟବହାର କରାଯାଇ ପାରନ୍ତା । କାରଣ ଭାରତ

ବିଶ୍ୱର ରାଷ୍ଟ୍ରମାନଙ୍କ ମଧ୍ୟରେ ସବୁଠାରୁ ଦରିଦ୍ର ଏବଂ ବହୁ ସଂଖ୍ୟାରେ ଗରିବ ଏଠାରେ ବାସ କରୁଛନ୍ତି । ଭାରତର ସଂଭ୍ରାନ୍ତ ମାନଙ୍କ କାର୍ଯ୍ୟସୂଚୀରେ ନିଯୁକ୍ତି ଓ ଦାରିଦ୍ର୍ୟ ନାହିଁ ଯାହାଫଳରେ ସେମାନେ ନିଯୁକ୍ତି ଯୋଜନାକୁ ବିରୋଧ କରୁଛନ୍ତି । କାମ କରିବାର ଅଧିକାର ବିଷୟରେ ନକହିବା ଭଲ ।

କଳା ଅର୍ଥନୀତି ଭାରତର ଜୀବନ ଶକ୍ତିକୁ ଏପରି ଶୋଷି ନେଇଛି ଯେ ରାଷ୍ଟ୍ର ତା'ର ସମସ୍ୟାକୁ ସମାଧାନ କରି ପାରୁନାହିଁ । ଯାହାଫଳରେ ଭାରତରେ ଯାହା ହେବା କଥା ତାହା ହୋଇ ପାରୁନି । ଏକ ସଭ୍ୟରାଷ୍ଟ୍ର ଭାବରେ ରହିବାକୁ ହେଲେ ଆମର ଆବଶ୍ୟକତା ପରିଷ୍କାର ପରିବେଶ, ଉତ୍ତମ ଶିକ୍ଷା ଓ ସ୍ୱାସ୍ଥ୍ୟ, ପରିଷ୍କାର ପାନୀୟ ଜଳ ଇତ୍ୟାଦି । ଆମ ମାନଙ୍କର ଏହା ଦେବାର କ୍ଷମତା ରହିଛି କିମ୍ୱା ଏହାଠାରୁ ଅଧିକ ସାଧାରଣ ଲୋକଙ୍କୁ ଦେବାର ଅଛି ।

କିନ୍ତୁ ଆମ୍ଭେମାନେ ଏହା କରି ପାରୁନାହାନ୍ତି । ଏହାର କାରଣ ହେଉଛି ଶାସକ ଶ୍ରେଣୀର ଇଚ୍ଛାଶକ୍ତିର ଅଭାବ । ସଂଭ୍ରାନ୍ତମାନେ ଏହି ବ୍ୟବସ୍ଥାକୁ ଦୁର୍ନୀତିଗ୍ରସ୍ତ କରିବାରେ ବ୍ୟସ୍ତ । ଯେଉଁମାନେ ଉଚ୍ଚସ୍ତରରେ ନୀତି ନିର୍ଦ୍ଧାରଣ କ୍ଷେତ୍ରରେ ଅଛନ୍ତି, ସେମାନେ ମୋଟା ଅଙ୍କରେ କିଣିହୋଇ ଯାଉଛନ୍ତି । ଅନେକ ଲୋକ ପ୍ରତିନିଧି ଅପରାଧି ତାଲିକାଭୁକ୍ତ ଏବଂ ସେମାନଙ୍କ ବିରୁଦ୍ଧରେ ଅନେକ ଫୌଜଦାରୀ ମାମଲା ରହିଛି । ଏପରିକି ବଂଚିତ ଶ୍ରେଣୀର ଅନେକ ନେତା ଅତ୍ୟନ୍ତ ଦୁର୍ନୀତିଗ୍ରସ୍ତ ଏବଂ ଯେଉଁମାନେ ଦରିଦ୍ରଲୋକମାନଙ୍କର ସେବା କରିବା କଥା କହୁଛନ୍ତି, ସେମାନେ ମଧ୍ୟ ବ୍ୟାପକ ଦୁର୍ନୀତିରେ ସଂପୃକ୍ତ । ଏହା ହେଉଛି ରାଷ୍ଟ୍ରର ବିକାଶ ନହେବାର ଅନ୍ୟ ଏକ କାରଣ । ସଂପଦର ଅଭାବ କିମ୍ୱା ଲୋକସଂଖ୍ୟା ବୃଦ୍ଧି କାରଣ ନୁହେଁ ।

ଗ୍ରାମାଞ୍ଚଳର ୧୦% ଲୋକ ଏବଂ ସହରାଞ୍ଚଳର ୧୫% ଲୋକଙ୍କ ହାତରେ ୫୦% ସଂପଦ ରହିଛି । କଳାଧନ ୩% ଲୋକଙ୍କ ହାତରେ ଥିବାରୁ, ଯଦି ସେମାନଙ୍କୁ ହିସାବକୁ ନିଆଯାଏ, ତେବେ ସେମାନଙ୍କ ହାତରେ ୫୦% ପ୍ରତିଶତ ସଂପଦ ରହିଛି । ଏହିପରି ମୂଳ ପୁଞ୍ଜି ମୁଷ୍ଟିମେୟ ଲୋକଙ୍କ ହାତରେ ଠୁଳ ରହିଥିବା ହେତୁ , ନିଯୁକ୍ତି ସୃଷ୍ଟି ପାଇଁ ପୁଞ୍ଜି ସଂଗ୍ରହ ଅତ୍ୟନ୍ତ କଷ୍ଟସାଧ୍ୟ ବ୍ୟାପାର । ରାଜନୈତିକ କ୍ଷେତ୍ରରେ ଏହି ସମସ୍ୟା ରହିଛି ଏବଂ ସଂଭ୍ରାନ୍ତ

ଶାସକବର୍ଗ ଏହାର ସମାଧାନ ପାଇଁ ଚେଷ୍ଟିତ କି ?

ଭାରତରେ ସମସ୍ୟା ୧୯୯୧ ମସିହାରୁ ଆରମ୍ଭ ହେଲା ବୋଲି କହିବା ଭୁଲହେବ । ୧୯୯୫ ମସିହାରେ ଜିଡିପିର ୨ ପ୍ରତିଶତ କଳାଧନ ଥିବାବେଳେ ୧୯୯୫ ମସିହାରେ ଏହା ୪୦ ପ୍ରତିଶତ ହୋଇଛି । ଏହି ସମସ୍ୟା ପଚାଶ / ଷାଠିଏ ଦଶକରୁ ଆରମ୍ଭ ହୋଇଛି ଏବଂ ବର୍ଷକୁ ବର୍ଷ ବଢ଼ିବାରେ ଲାଗିଛି । ୧୯୯୧ ମସିହାରେ ନୂତନ ଅର୍ଥନୈତିକ ନୀତି ଓ ୧୯୯୫ରେ ନୂତନ ବିଶ୍ୱବାଣିଜ୍ୟ ସଂଗଠନର ଶାସନିକ ପଦ୍ଧତି ହେତୁ ନିଯୁକ୍ତି ସୃଷ୍ଟି ଏବଂ ଦାରିଦ୍ର୍ୟ ସମସ୍ୟା ଉତ୍କଟ ଅବସ୍ଥାକୁ ଆସିଛି ।

କଳା ଅର୍ଥନୀତି ଫଳରେ ସ୍ଥୁଳ ଓ ସୁକ୍ଷ୍ମସ୍ତରରେ ନୀତି ନିର୍ଦ୍ଧାରଣ କ୍ଷେତ୍ର ସଂପୂର୍ଣ୍ଣ ବିଫଳ ହୋଇଛି । ଉଦାହରଣ ସ୍ୱରୁପ ଯଦି ନିଯୁକ୍ତି ସ୍କିମରେ ଦୁର୍ନୀତି ରହିଛି, ତେବେ ଖୁବ୍ କମ୍ ନିଯୁକ୍ତି ସୃଷ୍ଟିହେବ । ଯଦି ଶିକ୍ଷାକ୍ଷେତ୍ରରେ ଦୁର୍ନୀତି ରହିଛି, ତେବେ ସାକ୍ଷରତା ପାଇଁ ଥିବା ଲକ୍ଷ୍ୟ ପୂରଣ ହୋଇ ପାରିବ ନାହିଁ । ଯଦି ସ୍ୱାସ୍ଥ୍ୟକ୍ଷେତ୍ରରେ ଦୁର୍ନୀତିହେବ, ତେବେ ସ୍ୱାସ୍ଥ୍ୟ ସେବାର ଲକ୍ଷ୍ୟ ପୂରଣ ହୋଇ ପାରିବ ନାହିଁ । ଏହା ଫଳରେ ବିକାଶ ବାଧାପ୍ରାପ୍ତ ହେବ ।

ଏହା କହିବା ଅର୍ଥ ନୁହେଁ ଯେ ରାଷ୍ଟ୍ର ତା'ର ଚାହିଦାକୁ ବିକାଶ ପାଇଁ ନିବୁଜ କରିଦେବ କିନ୍ତୁ ସମ୍ବଳର ଅଭାବ ନାହିଁ । ରାଷ୍ଟ୍ରକୁ ଉନ୍ମୁକ୍ତ କରିବାକୁ ହେବ କିନ୍ତୁ ଏହା ସାଧାରଣଙ୍କ ସ୍ୱାର୍ଥକୁ ଜଗି କରିବାକୁ ହେବ । କେବଳ ସଂଭ୍ରାନ୍ତ ମାନଙ୍କ ପାଇଁ ନୁହେଁ । ବିଦେଶୀ ପୁଞ୍ଜିକୁ ଆକର୍ଷଣ କରିବା ପାଇଁ କୌଣସି ବିଶେଷ ସୁବିଧା ଦିଆଯିବା ଉଚିତନୁହେଁ । ରାଷ୍ଟ୍ରରେ ମିଳୁଥିବା ସମ୍ବଳକୁ ବିନିଯୋଗ କରି ଯାହାକି କଳାଧନ ଜରିଆରେ ନଷ୍ଟ ହେଉଛି ତାହାକୁ ବିନିଯୋଗ କରି ଆଭ୍ୟନ୍ତରୀଣ ବିକାଶକୁ ତ୍ୱରାନ୍ୱିତ କରିବାକୁ ହେବ

ବାଧ୍ୟତାମୂଳକ ନିଯୁକ୍ତିଭିତ୍ତିକ ବିକାଶ:-

ଉପରୋକ୍ତ ଆଲୋଚନାରୁ ଦେଖାଯାଏ ଯେ କୌଣସି କ୍ଷୁଦ୍ର ଦୃଷ୍ଟି ଭଙ୍ଗୀରେ ନିଯୁକ୍ତି ସମସ୍ୟାକୁ ବୁଝି ହେବ ନାହିଁ । ଯେପରିକି ପୁଞ୍ଜି ବିନିଯୋଗ ପାଇଁ ସ୍ୱଦେଶୀ ସମ୍ବଳର ଅଭାବ କିମ୍ୱା ରପ୍ତାନୀର ଅଭାବ । ରାଷ୍ଟ୍ରର ବିକାଶ ଧାରାକୁ ବଜାୟ ରଖିବାକୁ ହେବ ଏବଂ ଏହାର ବିକଳ୍ପ ମଧ୍ୟ ସ୍ଥିର କରିବାକୁ ହେବ । ଶାସକବର୍ଗଙ୍କର ସ୍ୱଚ୍ଛଦୃଷ୍ଟି ଏବଂ ତାହା ସ୍ୱାର୍ଥକୈନ୍ଦ୍ରିକ ଏବଂ ଅନ୍ୟମାନଙ୍କୁ

କଣଠେସା କରିବା ପାଇଁ ଗଣତାନ୍ତ୍ରିକ ଢାଞ୍ଚାରେ କାର୍ଯ୍ୟ କରୁନାହାଁନ୍ତି । ଯାହାର ପରିଣତି ହେଉଛି, ସଂଖ୍ୟା ଗରିଷ୍ଠ ମାନଙ୍କର ସମସ୍ୟା ବଢିବାରେ ଲାଗିଛି ।

ରାଷ୍ଟ୍ରର ଦୀର୍ଘ କାଳୀନ ସ୍ୱାର୍ଥକୁ ଆଖିଆଗରେ ରଖି ବିକାଶର ବିକଳ୍ପ ଦିଗ ପ୍ରତିଧ୍ୟାନ ଦେବାକୁ ହେବ ଯେଉଁଥିରେ ସମ୍ଭ୍ରାନ୍ତ ନୁହଁନ୍ତି ବରଂଗରିବ ଲୋକମାନଙ୍କର ପ୍ରତି ଦୃଷ୍ଟି ପକାଇବାକୁ ହେବ । ଏହା ମଧ ଥିଲା ଗାନ୍ଧିଜୀଙ୍କର ଭାବ "ଶେଷଲୋକଟି ପ୍ରଥମେ" ସେହି ଭାବଟି ହେଲା ନୀତି ସଂପର୍କରେ ଯଦି ସନ୍ଦେହ ହେବ, ତେବେ ସବାଶେଷ ବ୍ୟକ୍ତିଟିକୁ ଲକ୍ଷ୍ୟରେ ରଖି ତାହା ପାଇଁ କ'ଣ କରାଯାଇ ପାରୁଛି ଦେଖିବାକୁ ହେବ । ତାହାହେଲେ ନୀତିରେ ଭୁଲ ରହିବ ନାହିଁ । କିନ୍ତୁ ସ୍ୱାଧୀନ ଭାରତରେ ଠିକ୍ ଓଲଟା ଢଙ୍ଗରେ ନୀତି ନିର୍ଦ୍ଧାରଣ କରାଯାଉଛି । ବର୍ତ୍ତମାନ ଯେପରି ଆରମ୍ଭ ହେଉଛି ତାହା ହେଉଛି ଉପରୁ ତଳକୁ ଆସିବା । ଉପରୁ ତଳକୁ ଆସିବାର କାରଣ ହେଉଛି ଯେ ଏହାର ସୁଫଳ ଗରିବ ଲୋକଙ୍କ ପାଖରେ ପହଞ୍ଚିବ । କିନ୍ତୁ ଏହାଫଳରେ ସେମାନେ ଗୌଣ ହୋଇ ଯାଉଛନ୍ତି ଓ ନୀତି ନିର୍ଦ୍ଧାରଣର ଦୃଷ୍ଟି ସେମାନଙ୍କ ଉପରେ ପଡୁନାହିଁ ।

୧୯୯୧ ମସିହାଠାରୁ ସେମାନଙ୍କୁ କୁହାଯାଇଛି ଯେ ସେମାନେ ସେମାନଙ୍କର ଦାରିଦ୍ର୍ୟତା ପାଇଁ ଦାୟୀ ଏବଂ ସେମାନେ ଧନୀମାନଙ୍କ ଦ୍ୱାରା ଶାସନ ହେଉଥିବା ବଜାରରେ ନିଜକୁ ସୁରକ୍ଷିତ ରଖିବେ ।

ସଭ୍ୟତାର ଲକ୍ଷ୍ୟ ହେଉଛି ମାନବିକ ସୁଖ ବା ଆନନ୍ଦ । ଏହା କ'ଣ କେତେକ ମୁଷ୍ଟିମେୟଙ୍କର ସ୍ୱାର୍ଥକୁ ସୁରକ୍ଷାକରି ସଂଖ୍ୟାଧିକଙ୍କୁ ଅବହେଳା କଲେ ସମ୍ଭବ ହେବ ? ପୁଞ୍ଜିର ଲାଭ କ'ଣ ସଂଖ୍ୟାଧିକ ଲୋକଙ୍କର ଦାରିଦ୍ର୍ୟଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ? କ'ଣ କେତେକ ମୁଷ୍ଟିମେୟ ଲୋକ ଭୋଗକଲେ ତାହା ସାମଗ୍ରିକ ସୁଖବୋଲି କହିପାରିବା ? ବସ୍ତୁତନ୍ତ୍ର ଜଗତରେ ଏହା ହୁଏତ ଠିକ୍ ଜଣାପଡିପାରେ କିନ୍ତୁ ବାସ୍ତବରେ ଏହାନୁହେଁ । ଏହା ବ୍ୟକ୍ତିକୁ ଅଧିକରୁ ଅଧିକ ପାଇବା ପାଇଁ ଆଗ୍ରହ ସୃଷ୍ଟିକରିବ ଏବଂ ଅଧିକ ଆହରଣର ତୃଷ୍ଣା କେବେହେଲେ ମେଣ୍ଟି ପାରିବ ନାହିଁ । ଏହା ହେଉଛି ଉପଭୋକ୍ତାବାଦ । ବ୍ୟକ୍ତି ଅନ୍ୟବ୍ୟକ୍ତି ବା ଗୋଷ୍ଠୀ ସହିତ ଏଥିପାଇଁ ପ୍ରତିଯୋଗିତାରେ ଲାଗି ରହିବ । ପୁଞ୍ଜିବାଦୀ ଅର୍ଥବ୍ୟବସ୍ଥାରେ ଏହାର ପରିସମାପ୍ତି ନାହିଁ ଏବଂ ଆନନ୍ଦ କେବଳ ଏକ ମଧବର୍ତ୍ତୀ

ଅବସ୍ଥା ।

ଉପଭୋକ୍ତା ବାଦର ମନୋବୃତ୍ତି ଜୀବନରେ ବ୍ୟବସାୟୀ କରଣ ସହିତ ଯୁକ୍ତ । ଯାହା କିଛି ଗ୍ରହଣ କରୁଛୁ ତାହା ଉପଭୋକ୍ତା ବାଦନୁହେଁ । ଜୀବନ ମଧ୍ୟକୁ ବଜାରୀକରଣର ପ୍ରାବଲ୍ୟହେତୁ ଏପରି ଘଟୁଛି । କଂପାନୀମାନେ ଅଧିକ ଲାଭ ପାଇବା ପାଇଁ ପ୍ରଚାର ଯନ୍ତ୍ର ମାଧ୍ୟମରେ ଲୋକମାନଙ୍କୁ ଅଧିକରୁ ଅଧିକ ଭୋଗ କରିବା ପାଇଁ ପ୍ରବର୍ତ୍ତାଉଛନ୍ତି । ଏବଂ ଲୋକମାନଙ୍କ ମନରେ ଅଧିକ କିଣିବା ପାଇଁ ଆଗ୍ରହ ଜନ୍ମାଉଛନ୍ତି । ଯେତେ ଅଧିକ ଜିନିଷ କିଣିଲେ ମଧ୍ୟ ମନରେ ଅତୃପ୍ତି ରହୁଛି । ବଜାର ବାହାରେ ଯେଉଁସବୁ ପଦାର୍ଥ ମିଳୁଥିଲା ଯଥା ସଂସ୍କୃତି, ପାରିବାରିକ ଯନ୍ତ୍ର ଇତ୍ୟାଦି ତାହା ବଜାର ପରିଧି ମଧ୍ୟକୁ ଆସିଗଲାଣି । ଅତ୍ୟଧିକ ପ୍ରଭାବ ପକାଉଥିବା ବିଜ୍ଞାପନ ଲୋକମାନଙ୍କ ମନରେ ଅସନ୍ତୋଷ ସୃଷ୍ଟି କରିବା ପାଇଁ ବିଜ୍ଞାପିତ କରାଯାଉଛି । ଏପରିକି ଶିଶୁମାନଙ୍କୁ ମଧ୍ୟ ଏଥିରୁ ବାଦ ଦିଆଯାଉନାହିଁ । ଯୌନ ଓ ହିଂସାକୁ ମଧ୍ୟ ବ୍ୟବହାର କରାଯାଉଛି । ଶିଶୁମାନଙ୍କ ମଧ୍ୟରେ ଯୌନ ଉଚ୍ଛୃଙ୍ଖଳା ସୃଷ୍ଟିକରିବ ଓ ହିଂସାତ୍ମକ କାର୍ଯ୍ୟରେ ସେମାନେ ଲିପ୍ତ ରହିବେ ଏଥିପାଇଁ ପୁଞ୍ଜିର କୌଣସି ଚିନ୍ତା ନାହିଁ । ଏହାର ଫଳ ହେଉଛି ବିଶୃଙ୍ଖଳିତ ପିଲାମାନେ ଏବଂ ବିଚ୍ଛିନ୍ନ ପିତାମାତା ।

ଉପଭୋକ୍ତାବାଦର ପ୍ରାବଲ୍ୟ ଫଳରେ ବିଶ୍ୱବ୍ୟାପୀ ପରିବେଶରେ ଅଧୋଗତି ଘଟିଛି । ଏହାର ପରିଣାମ କ'ଣ ? ଆୟ ଅଧିକ କରାଯାଉଛି ପରିବେଶ ପ୍ରଦୂଷଣକୁ ଦୂର କରିବା ପାଇଁ ଏବଂ ଏହା ଗରିବ ଲୋକମାନଙ୍କୁ ଦେବାକୁ ହେଉଛି । ପରିବେଶ ପ୍ରଦୂଷଣ ହେବାରୁ ରୋଗ ବ୍ୟାପୁଛି ଏବଂ ବିଭିନ୍ନ ନୂତନ ପ୍ରକାର ରୋଗ ସବୁ ଜନ୍ମ ଲାଭ କରୁଛନ୍ତି । ଏହା ଫଳରେ ସ୍ୱାସ୍ଥ୍ୟକ୍ଷେତ୍ରରେ କେତେକ ବ୍ୟକ୍ତି ବିଶେଷ ଅର୍ଥ ରୋଜଗାର କରିବାବେଳେ, ଏହା ଚାରିଆଡେ ଯେଉଁ ଦୁର୍ଦ୍ଦଶା ସୃଷ୍ଟିକରୁଛି, ତାହାକୁ ଦୂରକରି ପାରିବ ନାହିଁ । ପରିବେଶ କ୍ଷେତ୍ରରେ ଓ ସ୍ୱାସ୍ଥ୍ୟ କ୍ଷେତ୍ରରେ କେତେକଲୋକଙ୍କର ଆୟ କ'ଣ ସବୁ ଲୋକମାନଙ୍କୁ ଆନନ୍ଦ ଦେଇପାରିବ ? ଏପରି କାର୍ଯ୍ୟଗୁଡିକ ହେଉଛି ଗାତ ଖୋଳିବା ଏବଂ ଗାତବନ୍ଦ କରିବା ଯାହା କାର୍ଯ୍ୟସିନା କରାଏ କିନ୍ତୁ ଉତ୍ପାଦନ ହୁଏନାହିଁ । ଯାହାର ଫଳ ହେଉଛି ଶୂନ ।

ପାଶ୍ଚାତ୍ୟ ମାର୍ଗରେ ବିକାଶ ଯାହା ବଜାରୀକରଣ ଓ ଉପଭୋକ୍ତାବାଦ

ଉପରେ ପର୍ଯ୍ୟବେସିତ, ଯାହାକୁ ଆମେ ଗ୍ରହଣ କରିଛନ୍ତି, ଏହା ଭାରତରେ ଅଗଣିତ ଲୋକଙ୍କ ପାଇଁ ଆବଶ୍ୟକ ନୁହେଁ ଯେଉଁମାନେ ବଜାରରେ ସମ୍ପୂର୍ଣ୍ଣ କଣଠେସା ହୋଇଯାଇଛନ୍ତି । ସେମାନେ ବଜାରରୁ ଶିକ୍ଷା, ସ୍ୱାସ୍ଥ୍ୟ, ସାଧାରଣ ସେବା ଇତ୍ୟାଦି ପାଇପାରୁ ନାହାଁନ୍ତି । ପୁନଶ୍ଚ ବଜାର ସହିତ ସହଯୋଗୀ ହୋଇ ବହୁ ସମ୍ବଳ ନଷ୍ଟ ହେଉଛି ଏବଂ ତାହା ମଧ୍ୟ ଲୋକଙ୍କର ଉନ୍ନତିର ପରିପନ୍ଥୀ । ଏହାର ସଂଶୋଧନ ଦରକାର ।

ମୋଟାମୋଟି ଭାବରେ କହିଲେ, ପାଶ୍ଚାତ୍ୟ ଦୃଷ୍ଟିଭଙ୍ଗୀର ବିକାଶ ଯାହା ଉପଭୋକ୍ତାବାଦ ଏବଂ ଅଧିକା ଭଲ ହେଉଛି ଉପରେ ପର୍ଯ୍ୟବେସିତ, ଏହାର ପୁନଃ ଅବଲୋକନ ଦରକାର, ଏହା ମନୁଷ୍ୟକୁ ଏକ ସୁକ୍ଷ୍ମଯନ୍ତ୍ରଭାବରେ ବିଚାର କରୁଛି । କାରଣ ଯନ୍ତ୍ରର ମାଲିକ ଯନ୍ତ୍ରର ସୁଇଚକୁ ଅନ୍ ଓ ଅଫ୍ ଆବଶ୍ୟକତା ଅନୁଯାୟୀ କରିବା ପରି, ନିଯୁକ୍ତି ବା ପୃଥକହେବା ଗୌଣହୋଇ ପଡିଛି ।

ପୂନଶ୍ଚ ଆଧୁନିକ ଅର୍ଥନୀତିରେ ଯେଉଁ ଖାଦ (Waste ) ଉତ୍ପନ୍ନ ହେଉଛି ତାହା କୌଣସି ପ୍ରକାର ଜନହିତକର କାର୍ଯ୍ୟରେ ଲାଗୁନାହିଁ । ଆମକୁ ବିଚାର କରିବାକୁ ହେବଯେ ଆମର ବିକାଶ, ଟେକ୍ନୋଲଜି ଓ ମୁଣ୍ଡପିଛା ଆୟ ନିମିତ୍ତ । କିପରି ପାଶ୍ଚତ୍ୟ ସମାଧାନ ଆଦୌ ସମାଧାନର ମାର୍ଗ ନୁହେଁ ?

ଆମକୁ ଆମର ଆବଶ୍ୟକତାକୁ ଚାହିଁ ଦେଖିବାକୁ ହେବ ଏବଂ ଆମର ସମାଧାନର ରାସ୍ତା ବାହାର କରିବାକୁ ହେବ । ଏଥିପାଇଁ ବୁଦ୍ଧିଜୀବୀ ମାନେ'ଧାରକରା'ବୁଦ୍ଧିଜୀବୀ ହେବା ଉଚିତ ନୁହେଁ ଏବଂ ନୀତି ନିର୍ଦ୍ଧାରକମାନେ ସବୁ ସମସ୍ୟାର ସମାଧାନ ପାଇଁ ପାଶ୍ଚାତ୍ୟ ରାଷ୍ଟ୍ରକୁ ଚାହିଁବା ଦରକାର ନାହିଁ । ଆମମନ ମଧ୍ୟରେ ବସାବାନ୍ଧି ରହିଥିବା ମାକଲେ ଭୂତକୁ ଦୂର କରିବାକୁ ହେବ । ସମ୍ଭ୍ରାନ୍ତ ବର୍ଗଙ୍କର ଦୃଷ୍ଟି ଭଙ୍ଗୀରେ ପରିବର୍ତ୍ତନ ଲୋଡା ଏବଂ ଯାହା ସ୍ୱଦେଶୀ ତାହା ଖରାପନୁହେଁ ବୋଲି ବିଚାର କରିବାକୁ ହେବ । ଏହା ଭାବିବା ସମ୍ପୂର୍ଣ୍ଣ ଭ୍ରମାତ୍ମକ ଯେ ଆମର ବିକାଶ ପାଇଁ ଆମ ପାଖରେ ସମ୍ବଳ ନାହିଁ ଏବଂ ଏଥିପାଇଁ ଆମକୁ ଆନ୍ତର୍ଜାତିକ ଆର୍ଥିକ ପୁଞ୍ଜିର ସହାୟତା ନେବାକୁ ହେବ, ଯାହାକି ବର୍ତ୍ତମାନର ଏକ ପାଖିଆ ଜଗତୀ କରଣକୁ ଆମ ଉପରେ ଲଦି ଦେଉଛନ୍ତି । ଏଥିପାଇଁ ବିଶ୍ୱବ୍ୟାପୀ ଶ୍ରମିକ ଆନ୍ଦୋଳନର ଆବଶ୍ୟକତା ରହିଛି

କିନ୍ତୁ ଏହାର ଚିହ୍ନ ମଧ୍ୟ ଦେଖାଯାଉନି । ଏହାର କାରଣ ହେଉଛି ଶ୍ରମ ଶକ୍ତିର ବିଭିନ୍ନତା । ଛାତ୍ର ଓ ଯୁବକମାନେ ସମସ୍ୟା ଜଡିତ ହୋଇ ରହିଥିଲେ ମଧ୍ୟ ବିଶେଷକରି ନିଯୁକ୍ତି ସଂକ୍ରାନ୍ତରେ ଆନ୍ଦୋଳନ କାହିଁକି କରୁନାହାଁନ୍ତି ? ଷାଠିଏ ଦଶକରେ ଛାତ୍ରମାନେ ବିଭିନ୍ନ ସାମାଜିକ ସମସ୍ୟାକୁ ନେଇ ଆନ୍ଦୋଳନ କରୁଥିଲେ । ସମାଜକୁ ପରିବର୍ତ୍ତନ କରିବା ପାଇଁ ସେମାନଙ୍କର ଆଗ୍ରହଥିଲା । ବର୍ତ୍ତମାନ ଯୁବପିଢି ସମାଜକୁ ଗ୍ରହଣ କରିଯାଇଛି । କ୍ୱଚିତ ସାମାଜିକ ବ୍ୟାଧି ବିରୋଧରେ ଆନ୍ଦୋଳନ କରୁଛି । ଏଥିପାଇଁ ହୁଏତ ବହୁ ଗୁଡିଏ କାରଣ ଥାଇପାରେ । ଯୁବପିଢି ବେଶୀ ଭାବରେ ନିଜର କ୍ୟାରିୟର ଉପରେ ଗୁରୁତ୍ୱ ଦେଉଛି ଏବଂ ସେମାନଙ୍କର ବିଚାର ବ୍ୟକ୍ତି କୈନ୍ଦ୍ରିକ । ଯୁବପିଢି ଯଦି ବଜାର ସହିତ ସମଝୋତା କରେ ତେବେ ତା ପାଇଁ ସୁବର୍ଣ୍ଣ ଭବିଷ୍ୟତ ରହିଛି ବୋଲି ଭାବୁଛି । ବର୍ତ୍ତମାନ ଯୁବପିଢି ଆଉ ପ୍ରଶ୍ନ କରୁନି ବରଂ ସିଧା ସଳଖ ଶିକ୍ଷାଲାଭ କରୁଛି ।

ଆମ ଆଗରେ ବହୁତକମ୍ ଆଦର୍ଶ ରହିଛନ୍ତି । ଆଦର୍ଶ ବର୍ତ୍ତମାନ ସୁଦୁର ପରାହତ । ଯେଉଁମାନେ ବର୍ତ୍ତମାନ ଆମର ଆଦର୍ଶ ସେମାନେ ସମସ୍ତେ ଚରିତ୍ରରେ ଧନାଢ୍ୟ ଓ ବ୍ୟବସାୟିକ ଯଥା: ତେନ୍ଦୁଲକର, ଐଶ୍ୱର୍ଯ୍ୟା, ଆମ୍ବାନୀ, ଟାଟା ଇତ୍ୟାଦି । ସବୁଠି ବ୍ୟବସାୟଗତ ସ୍ୱାର୍ଥର ପ୍ରୋତ୍ସାହନ । ଗାନ୍ଧୀ, ବିବେକାନନ୍ଦ, ଭଗତସିଂହ, ସୁଭାଷବୋଷ ଇତ୍ୟାଦି ଯେଉଁମାନେ ତ୍ୟାଗ ଓ ଆଦର୍ଶ ପାଇଁ ଜଣାଶୁଣା ସେମାନେ ବର୍ତ୍ତମାନ ଅପାଂକ୍ତେୟ ।

ବିକଳ୍ପ ରାସ୍ତାଭାବରେ କୃଷି କ୍ଷେତ୍ର ଉପରେ ଗୁରୁତ୍ୱ ଦେବାକୁ ହେବ । କ୍ଷୁଦ୍ର ଉଦ୍ୟୋଗ, କୁଟୀର ଶିଳ୍ପ, ଗ୍ରାମ୍ୟ ଭିତ୍ତିଭୂମି ଇତ୍ୟାଦି ପାଇଁ ତଡିତ ବିକାଶର ଟେକ୍ନୋଲଜି ଏହି କ୍ଷେତ୍ରରେ ପ୍ରୟୋଗ କରିବାକୁ ହେବ । ରାଷ୍ଟ୍ରକୁ ଆବଶ୍ୟକତା ଅନୁଯାୟୀ ନିବୁଜ ଅର୍ଥନୀତିକୁ ଆପଣାଇବାକୁ ପଡିବ ଯାହାଫଳରେ ପୁଞ୍ଜି ଅର୍ଥନୀତିକୁ ସ୍ଥାନଚ୍ୟୁତ କରିପାରିବ ନାହିଁ ।

ବହୁ ସମୟରେ ଭୟ ହେଉଛି ଯେ ଯେଉଁସମାଜ ଟେକ୍ନୋଲଜିକୁ ଛାଡି ଯାଉଛି, ତାହା ବିପଦରେ ପଡୁଛି । ଏହା ଏକପାଖିଆ ଦୃଷ୍ଟାନ୍ତ । ଯେଉଁ ସମାଜ ଗତିଶୀଳ ନୁହେଁ ସେଠାରେ ଏପରି ଘଟିପାରେ । ରାଷ୍ଟ୍ରରେ ଯେତେବେଳେ ସବୁଜ ବିପ୍ଳବ ହୋଇଥିଲା ତାହା ରାଷ୍ଟ୍ରର ବେକାରୀ ସମସ୍ୟାକୁ

ଦୂର କରିବାରେ ସାହାଯ୍ୟ କରିଥିଲା । ତେଣୁ ଟେକ୍ନୋଲଜିର ପ୍ରୟୋଗ କେତେକ ସମସ୍ୟାକୁ ସମଧାନ କରି ଦେଇପାରେ । ହୁଏତ ସବୁ ସମସ୍ୟାର ସମାଧାନ କରି ଅନ୍ୟ କେତେକ ସମସ୍ୟା ସୃଷ୍ଟି କରିପାରେ । ଯଦି ସମସ୍ତେ ବୈଷୟିକ ପରିବର୍ତ୍ତନ ପାଇଁ ଚେଷ୍ଟା କରନ୍ତି, ତେବେ ଅସନ୍ତୁଳନ ସୃଷ୍ଟି ହେବ ନାହିଁ ଏବଂ ବର୍ତ୍ତମାନ ଯେଉଁ ପୃଥିବୀ କରଣ ଦେଖା ଦେଇଛି ତାହା ଘଟିବ ନାହିଁ ଏବଂ ବର୍ତ୍ତମାନର ସମସ୍ୟା ଦେଖାଦେବ ନାହିଁ ।

ବର୍ତ୍ତମାନ ସମାଜର ସବୁଠାରୁ ବଡଗୋଷ୍ଠୀ ବିକାଶ ମଧ୍ୟରେ ନାହାଁନ୍ତି ଏବଂ ବ୍ୟବସ୍ଥା ଉପରେ ନିଜେ ବଞ୍ଚିବାକୁ ଚେଷ୍ଟା କରୁଛନ୍ତି । ବିକଳ୍ପ ସାମାଜିକ ବ୍ୟବସ୍ଥା ମାଧ୍ୟମରେ ସମାଜ ବେଶୀ ସୁସଂହତ ହେବ ଏବଂ କେହି ନିଜେ ବଞ୍ଚିବା ପାଇଁ କଷ୍ଟ କରିବାକୁ ହେବ ନାହିଁ ।

## ପରିସମାପ୍ତି:-

ଅତ୍ୟଧିକ ନିଯୁକ୍ତି ସୃଷ୍ଟି ପାଇଁ ଦୁଇଟି ମୁଖ୍ୟ ସମସ୍ୟାର ସମ୍ମୁଖୀନ ହେବାକୁ ହେବ । ଏକ ପକ୍ଷରେ ଏକ ପାଖିଆ ଜଗତୀକରଣ ଓ ଅନ୍ୟପକ୍ଷରେ କଳା ଅର୍ଥନୀତି । ସମ୍ଭ୍ରାନ୍ତ ବର୍ଗ ବର୍ଦ୍ଧିତ ବେକାରୀ ସମସ୍ୟା ସମାଧାନ ପାଇଁ ନିଜ ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ କରିବା ପ୍ରଥମ ଆବଶ୍ୟକତା । ଦ୍ୱିତୀୟତଃ ଅତ୍ୟଧିକ କଳାଅର୍ଥନୀତିକୁ ଲୋକଲୋଚନକୁ ଆଣିବା ପାଇଁ ଯୁବପିଢିକୁ ଆନ୍ଦୋଳନ କରିବାକୁ ହେବ । ନିଯୁକ୍ତି ହୀନ ବିକାଶ ନୀତି ବିରୁଦ୍ଧରେ ସଂଗ୍ରାମ କରିବାର ଅର୍ଥ ହେଉଛି ନୀତିର ପରିବର୍ତ୍ତନ ପାଇଁ ସଂଗ୍ରାମ କରିବା ଭବିଷ୍ୟତ ଯୁବପିଢିର । ସେଥିପାଇଁ ସେମାନଙ୍କୁ ଅନ୍ୟାନ୍ୟ ପ୍ରଗତିଶୀଳ ଶକ୍ତିମାନଙ୍କ ସହିତ ମିଶି ସଂଗ୍ରାମକୁ ଆଗେଇ ନେବାକୁ ହେବ । ରାଷ୍ଟ୍ରର ବର୍ତ୍ତମାନ ଜଗତୀକରଣ ନୀତିର ପରିବର୍ତ୍ତନ ନିଯୁକ୍ତି ସୃଷ୍ଟି କରିବାକୁ ସମ୍ଭବ ହେବ ।



